ଅମାବାସ୍ୟାର ଚନ୍ଦ୍ର

ଲେଖକ
ବାରିଷ୍ଟର ଗୋବିନ୍ଦ ଦାସ

ପ୍ରକାଶକ
ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ- ୭୫୩ ୦୦୨

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ୍,
ଝୋଲାସାହି, (ନିଉକଲୋନୀ)
କଟକ-୭୫୩ ୦୦୧

ମୂଲ୍ୟ :
ଶୋଭନ - ପଞ୍ଚଚାଳିଶ ଟଙ୍କା
ସାଧାରଣ - ଛତିଶ ଟଙ୍କା

**AMABASYAR CHANDRA**

*A Novel by*
**Barrister Gobinda Das**

*Published by*
Govinda Charan Patra
**ORISSA BOOK STORE**
Binod Behari, Cuttack-2

Printed at
Guruprasana Press
Cuttack - 753 001

Price : **Rs. 45 /–**

ISBN : 81-7400-087-9

25th Edition-**2008**

## ଅମାବାସ୍ୟାର ଚନ୍ଦ୍ର ପୁସ୍ତକର ପ୍ରକାଶକାଳ:

ପ୍ରଥମ ମୁଦ୍ରଣ  ୧୯୬୪, ଡିସେମ୍ବର
ଦ୍ୱିତୀୟ ମୁଦ୍ରଣ  ୧୯୬୮ ,
ତୃତୀୟ ମୁଦ୍ରଣ  ୧୯୭୧
ଚତୁର୍ଥ ମୁଦ୍ରଣ : ୧୯୭୪
ପଞ୍ଚମ ମୁଦ୍ରଣ  ୧୯୭୬
ଷଷ୍ଠ ମୁଦ୍ରଣ  ୧୯୭୭
ସପ୍ତମ ମୁଦ୍ରଣ : ୧୯୭୯
ଅଷ୍ଟମ ମୁଦ୍ରଣ : ୧୯୮୧
ନବମ ମୁଦ୍ରଣ : ୧୯୮୨
ଦଶମ ମୁଦ୍ରଣ  ୧୯୮୪
ଏକାଦଶ ମୁଦ୍ରଣ : ୧୯୮୬
ଦ୍ୱାଦଶ ମୁଦ୍ରଣ  ୧୯୮୮

ତ୍ରୟୋଦଶ ମୁଦ୍ରଣ  ୧୯୯୦
ଚତୁର୍ଦ୍ଦଶ ମୁଦ୍ରଣ  ୧୯୯୧
ପଞ୍ଚଦଶ ମୁଦ୍ରଣ  ୧୯୯୪
ଷୋଡ଼ଶ ମୁଦ୍ରଣ  ୧୯୯୫
ସପ୍ତଦଶ ମୁଦ୍ରଣ  ୧୯୯୬
ଅଷ୍ଟାଦଶ ମୁଦ୍ରଣ : ୧୯୯୮
ଊନବିଂଶ ମୁଦ୍ରଣ : ୧୯୯୯
ବିଂଶ ମୁଦ୍ରଣ  ୨୦୦୦
ଏକବିଂଶ ମୁଦ୍ରଣ : ୨୦୦୨
ଦ୍ୱାବିଂଶ ମୁଦ୍ରଣ : ୨୦୦୪
ତ୍ରୟୋବିଂଶ ମୁଦ୍ରଣ  ୨୦୦୫
ଚତୁର୍ବିଂଶ ମୁଦ୍ରଣ : ୨୦୦୭
ପଞ୍ଚବିଂଶ ମୁଦ୍ରଣ : ୨୦୦୮, ଗଣେଶ ଚତୁର୍ଥୀ

## ଏଇ ଲେଖକଙ୍କ ଅନ୍ୟାନ୍ୟ କୃତି

ଦେଶେ ଦେଶେ (ଭ୍ରମଣ ସାହିତ୍ୟ)

ମିଶ୍ର ରାଗ (ଗଳ୍ପ ସଂକଳନ)

ଚାତକ (କବିତା ସମ୍ଭାର)

କେତେ କଥା ଓ କିଛି କବିତା : ଏକତ୍ର ସଂକଳନ

ସାନ ଗୋଟିଏ ଜୀବନ (ଲେଖକଙ୍କ ଆତ୍ମଜୀବନୀ)

Every one is a moon
and has a dark side
which he never shows to
any body.

Mark Twain.

ଏହି ଆଗ ପୁଣ୍ୟକୁ ସ୍ମରଣର
ଓଡ଼ିଆକଳା ସ୍ରଷ୍ଟାମାନଙ୍କ ସ୍ମୃତିର
ସଙ୍ଗରେ, ସାଙ୍ଗପଣର ନିବିଡ଼ତାରେ
ଭୋର ସାଙ୍ଗରେ, ଓଡ଼ିଆର ସହାନ୍
ସମ୍ମୁଖ ହାତରେ ମୋର ଓ
ଶାଉଳକୁ ସମର୍ପି ଦେଉଛି।

ଶୋଭନ ଦାସ।

## ତୁମେ କାଉଲ୍,

ତୁମର ଯନ୍ତ୍ରଣା ନାହିଁ, ନାହିଁ ଅନୁଶୋଚନା । ଭାଗ୍ୟ ବିରୁଦ୍ଧରେ ନାହିଁ ବିଦ୍ରୋହ ଅଥବା ଆତ୍ମସମର୍ପଣ । ବିଜୟ ପାଇଁ ନାହିଁ ଆଗ୍ରହ, ନାହିଁ ପରାଜୟର ଭୟ । ତୁମେ ନିର୍ବିକାର, ନିରବଚ୍ଛିନ୍ନ ପୁରୁଷ । ବିଥୋଭନ୍‌ଙ୍କ ଫୋର୍ଥ୍ ସିମ୍ଫୋନି ପରି ନିଶ୍ଚଳ, ଶାନ୍ତ, ଜୀବନର ଶତ ଝଡ଼ଝଞ୍ଝା ସତ୍ତ୍ୱେ ।

ତୁମ ଜୀବନ ଅନନ୍ତ ପାପର ଏକ ଅସରନ୍ତି ଗାଥା । ପାଦେ ପାଦେ ତୁମେ ଧର୍ମ, ସମାଜର ନୀତି-ନିୟମ-ଶୃଙ୍ଖଳାକୁ ଆଘାତ କରିଛ । ବାଇବେଲ୍‌ର ନିର୍ଦ୍ଦେଶ, କୋରାନ୍‌ର ଆଦେଶ, ଗୀତାର ପରାମର୍ଶ ସବୁ ତୁମ ପାଖରେ ଅବହେଳିତ । ସମସ୍ତେ ତୁମକୁ ନିନ୍ଦିବେ ପକ୍ଷାଘାତ ବ୍ୟାଧିଗ୍ରସ୍ତ ବୋଲି । ତୁମ କଥା ଲେଖିଲେ ଲୋକେ ଅପବାଦ ଦେବେ । କହିବେ, ଏ କକ୍ଷଚ୍ୟୁତ, ଚରିତ୍ରହୀନ, ଲମ୍ପଟ, ଆମର ଏ ସମାଜକୁ କଳଙ୍କିତ କରିବ, ପରମ୍ପରା ହେବ ନଷ୍ଟ, ଭବିଷ୍ୟତର ଚିନ୍ତା ହେବ କଳୁଷିତ ।

ତଥାପି ଲେଖୁଛି । କାରଣ ଅତଳସ୍ପର୍ଶୀ କଳଙ୍କ ସତ୍ତ୍ୱେ ତୁମ ଚରିତ୍ରର ଏକ ବଳିଷ୍ଠ ମର୍ଯ୍ୟାଦା ରହିଛି । ତୁମ ଜୀବନର ଘନ ଅନ୍ଧକାର ଗହ୍ୱର ମଧ୍ୟରେ ଏକ ପ୍ରଦୀପର କୋମଳ ଆଭା ମଧ୍ୟ ଲକ୍ଷ୍ୟ କରିଛି । ତୁମର କଳଙ୍କ ଯିଏ ଦେଖିବ, ସେ ଏ ଆଲୋକକୁ ମଧ୍ୟ ଅବଜ୍ଞା କରିପାରିବ ନାହିଁ । ଲୋକେ ବୁଝନ୍ତୁ ଯେ, ଅନ୍ୟକୁ ପତିତ ବୋଲି ଆଖ୍ୟା ଦେବା ସହଜ ନୁହେଁ,

ବ୍ୟକ୍ତିର ପରିଧିକୁ ସମୀକ୍ଷଣ କରିବା କେତେ ଜଟିଳ । ଚରିତ୍ରହୀନତା ଭିତରେ ଥାଇପାରେ ମହତ୍ତ୍ୱ । ପାପ ଭିତରେ ମଧ ଥାଇପାରେ ଗୌରବ ।

ତୁମ ଜୀବନରେ କିଛି ବିଡ଼ମ୍ବନା ନାହିଁ, କିଛି ପ୍ରତାରଣା ନାହିଁ, କିଛି ହିପୋକ୍ରାସି ନାହିଁ । ତୁମେ ସତ୍ୟ — ମୃତ୍ୟୁ ପରି, ତୁମେ ଚିରଞ୍ଜୀବୀ — ଅନ୍ଧକାର ପରି ।

କିନ୍ତୁ ଲୋକେ କହିବେ, ହୋଇପାରେ ଏ ସତ୍ୟ, ହୋଇପାରେ ଏ ଚିରଞ୍ଜୀବୀ; କିନ୍ତୁ ଶ୍ମଶାନ ସତ୍ୟ ବୋଲି ତା'ର ସ୍ଥାନ ମନ୍ଦିରରେ ନୁହେଁ । ଆମର ଏ ପବିତ୍ର, ଶିବ-ସୁନ୍ଦର ସମାଜର ପ୍ରାଙ୍ଗଣରେ ଏ ଦାନବ, ଏ ପାପୀର ସ୍ଥାନ କାହିଁ ? କୁଷ୍ଠରୋଗୀ ପରି ଗ୍ରାମର ପରିକ୍ରମାନ୍ତରେ ଏହାର ବାସସ୍ଥାନ ।

ଆଦମ୍ ବା ପ୍ରଥମ ପୁରୁଷ ପାପୀ ବା ପୁଣ୍ୟାତ୍ମା ନ ଥିଲେ । ଜନ୍ମରେ ପ୍ରତ୍ୟେକ ବ୍ୟକ୍ତି ନିଷ୍ପାପ । ସମାଜର ତତ୍‌କାଳୀନ ନିର୍ଦ୍ଦେଶ ତାକୁ ସେ ଆଖ୍ୟା ଦିଏ । କେତେକ ବ୍ୟକ୍ତି ଅଛନ୍ତି, ବିଭିନ୍ନ କାରଣରୁ ତତ୍‌କାଳୀନ ସମାଜ ତାଙ୍କ ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ବିସ୍ତାର କରିପାରେ ନାହିଁ । ସେମାନେ ନିଜକୁ ଘୋଷଣା କରନ୍ତି ସ୍ୱାଧୀନ, ସମାଜଠୁ, ଧର୍ମଠୁ । ସେଇମାନଙ୍କ ଭିତରୁ ବାହାରନ୍ତି ବୁଦ୍ଧ, ଯୀଶୁ, ମହମ୍ମଦ, ଗାନ୍ଧୀ, ସକ୍ରେଟିସ୍ । ସେମାନେ ସମାଜକୁ ନିଜର କର୍ତ୍ତୃତ୍ୱକୁ ଆଣିବାକୁ ଚେଷ୍ଟା କରନ୍ତି । ଅବଶେଷରେ ସେଇମାନେ ହୁଅନ୍ତି କୃତକାର୍ଯ୍ୟ । ସମାଜ ହୁଏ ବଶୀଭୂତ, ସେମାନଙ୍କର ମୂଲ୍ୟବୋଧକୁ ଗ୍ରହଣ କରି ନିଜର ପରିବର୍ତ୍ତନ କରେ । ସେମାନେ ହୁଅନ୍ତି ମହାତ୍ମା । କିନ୍ତୁ ଯଦି ସମାଜ ଆୟତ୍ତାଧୀନ ନ ହୁଏ, ଅଥଚ ତୁମେ ମୂଲ୍ୟବୋଧକୁ ଅସ୍ୱୀକାର କର, ତା'ରି ରଥଚକ ତଳେ ତୁମେ ହେବ ନିଷ୍ପେଷିତ । ଆଖ୍ୟା ପାଇବ ଭ୍ରଷ୍ଟ, ପାପୀ, ବିଚ୍ୟୁତ ।

ଲକ୍ଷ୍ମଣ ସୀତାଙ୍କପାଇଁ ନିଷିଦ୍ଧ-ଗାର ଟାଣିଲା ପରି ସମାଜ ଗୋଟିଏ ରେଖା ଟାଣେ । କହେ, ଏହାକୁ ଟପିଲେ ପାପ, ଏହାର ପଛଆଡ଼େ ରହିଲେ ପୁଣ୍ୟ । ପାପ-ପୁଣ୍ୟର ବିଚାର କେବଳ ଏ ସୀମା ପ୍ରତି ସମ୍ମାନର କଥା । ଅଙ୍ଗୁର ଖାଅ, ସ୍ୱାସ୍ଥ୍ୟ ପକ୍ଷରେ ହିତକର; କିନ୍ତୁ ଏଇ ଅଙ୍ଗୁରର ରସକୁ ସିଦ୍ଧକରି ଗିଲାସ ଭିତରେ ପିଅ, ତୁମେ ହେବ ମଦ୍ୟପ । ଏକ ନାରୀକୁ ଉପଭୋଗ କର, ସମାଜ ତୁମକୁ କହିବ ସ୍ୱାମୀ । ଅତ୍ୟଧିକ ନାରୀକୁ ଉପଭୋଗ କର, ସମାଜ କହିବ ଲମ୍ପଟ । ଭବିଷ୍ୟତର ଆର୍ଥିକ ସ୍ୱଚ୍ଛଳତାପାଇଁ ଜଗନ୍ନାଥଙ୍କ ପାଖରେ ଧନ ବିତରଣ କର, ସମାଜ କହିବ ଧାର୍ମିକ । ରେସ୍‌କୋର୍ସରେ ତୁରନ୍ତ ଆର୍ଥିକ ସ୍ୱଚ୍ଛଳତାପାଇଁ ଲଟେରୀ କିଣ, ସମାଜ କହିବ ଗ୍ୟାମ୍ବଲର୍, ଜୁଆଡ଼ି ।

ଦିନେ ଗୁରୁ ରତ୍ନାକର ତାଙ୍କର ଶିଷ୍ୟ ଶ୍ୱେତାଙ୍କ ଓ ବିଶାଳଦେବଙ୍କୁ ପଚାରିଲେ — "ବର୍ତ୍ତମାନ ଉଭୟଙ୍କୁ ତ ଲକ୍ଷ୍ୟ କରିଛ । କୁହ' ତୁମ୍ଭମାନଙ୍କ ମତରେ କିଏ ପାପୀ, ବିଜିଗୁପ୍ତ ନା କୁମାରଗିରି ?" ଶ୍ୱେତାଙ୍କ କହିଲେ, "ମହାପ୍ରଭୁ ! ବିଜିଗୁପ୍ତ ଭଗବାନଙ୍କ ଅବତାର ପରି । ସଂସାରରେ ସେ ଶାନ୍ତ ଓ ମହତ୍ୱର ଜୀବନ୍ତ ପ୍ରତିମା । ତାଙ୍କର ହୃଦୟ ବିଶାଳ, ମନୁଷ୍ୟତା ଅସୀମ, ତ୍ୟାଗ ଅକଳନୀୟ । କିନ୍ତୁ କୁମାରଗିରି ? ସେ ସ୍ୱାର୍ଥପର, ପଶୁ । ନିଜର ଉଦ୍ଦେଶ୍ୟ ସିଦ୍ଧି ପାଇଁ ସମସ୍ତ ଜଗତକୁ କରିଛି ଭ୍ରୂକ୍ଷେପ । ନିଜର ତଥାକଥିତ ସ୍ୱର୍ଗୀୟ ଉପଭୋଗ ପାଇଁ ପ୍ରକୃତିର ନିୟମକୁ ଅବଜ୍ଞା କରିଛି । ସମସ୍ତ ଜୀବନ ତା'ର ବିତିଯାଇଛି ମନୁଷ୍ୟର ଏ ପ୍ରାକୃତିକ ପ୍ରେରଣାକୁ ନିୟନ୍ତ୍ରଣ କରିବାରେ । ସମୟ ଓ ସୁଯୋଗର କି କଦର୍ଯ୍ୟ ଅପବ୍ୟବହାର ! ସେଥିରେ ନା ଅଛି ଗୌରବ, ନା ଅଛି କିଛି ମହତ୍ୱ । ସେ ହେଉଛି ପାପୀ । ଆମର ଏ ବିଜିଗୁପ୍ତ ପାଖରେ ଅତି କ୍ଷୁଦ୍ର ।"

ସେହି ପ୍ରଶ୍ନର ଉତ୍ତର ବିଶାଳଦେବ ଦେଲେ । କହିଲେ ''ମହାପ୍ରଭୁ ! ଯୋଗୀ କୁମାରଗିରି ଅଦମ୍ୟ ଓ ମହାନ୍ । ସେ ନିଜର ଅହଂ କୁ, ନିଜର କାମମୋହକୁ, ଯାହା ବ୍ୟକ୍ତିକୁ ସଙ୍କୁଚିତ କରେ, ବିଚ୍ୟୁତ କରେ, ତାକୁ ଦମନ କରିପାରିଛନ୍ତି । ତାଙ୍କର ଜ୍ଞାନ, ତାଙ୍କର ଐଶ୍ୱରିକ ଶକ୍ତିର ପଟାନ୍ତର ନାହିଁ । ଆଉ ଏ ବିଜିଗୁପ୍ତ—ସେ ପାର୍ଥିବ ସମ୍ଭୋଗର ହୀନ ଦାସ, ଉଚ୍ଛୃଙ୍ଖଳ ଭୋଗ-ବିଳାସର ପୁତ୍ତଳିକା । ତା'ର ହୃଦୟ, ତା'ର ମନୁଷ୍ୟତା, ତା'ର ତଥାକଥିତ ତ୍ୟାଗ ସବୁ ଏହି ପାର୍ଥିବ ସୁଖପାଇଁ ନିୟୋଜିତ । ପାପର ଜୀବନ୍ତ ଉଦାହରଣ ଏଇ ମ୍ଳେଚ୍ଛ ବିଜିଗୁପ୍ତ ।''

ପାଟଳିପୁତ୍ରରେ ଗୁରୁଦେବ ରତ୍ନାକରଙ୍କର ଦୁଇଜଣ ବିଦ୍ୟାର୍ଥୀ ଥିଲେ—ଶ୍ୱେତାଙ୍କ ଓ ବିଶାଳଦେବ । ଆଶ୍ରମରେ ଉଭୟଙ୍କ ଶିକ୍ଷା ଶେଷ ହେଲା ପରେ ସେମାନେ ପଚାରିଲେ, ''ଗୁରୁଦେବ ! ସବୁ ବିଷୟରେ ବିଦ୍ୟା ହାସଲ କଲୁ, କିନ୍ତୁ ଗୋଟାଏ ବିଷୟରେ ସବିଶେଷ ଜ୍ଞାନ ପାଇଲୁ ନାହିଁ । ସେ ହେଉଛି ପାପ କ'ଣ ? ପୁଣ୍ୟ କ'ଣ ? ସେଥି ଭିତରେ ପାର୍ଥକ୍ୟ କେଉଁଠି ?'' ଗୁରୁଦେବ କହିଲେ, ''ଏହା ଏକ ଜଟିଳ ପ୍ରଶ୍ନ । ମୁଁ ଅନେକ ଥର ଚେଷ୍ଟା କରିଛି ଏହାକୁ ବ୍ୟାଖ୍ୟା କରିବାପାଇଁ; କିନ୍ତୁ କେବେହେଲେ ଏହାକୁ ସମ୍ୟକ୍ ଭାବରେ ମଧ ପ୍ରକାଶ କରିପାରି ନାହିଁ । ଏଥିପାଇଁ ନିଜର ଅଭିଜ୍ଞତା ଆବଶ୍ୟକ । ମୁଁ ତୁମ ଦୁଇଜଣଙ୍କୁ ମୋର ଦୁଇ ଜଣ ପୁରାତନ ବିଦ୍ୟାର୍ଥୀଙ୍କ ପାଖକୁ ପଠାଉଛି । ଦୁଇଜଣଙ୍କର ଚରିତ୍ର ବିପରୀତ । ସେମାନଙ୍କୁ ଲକ୍ଷ୍ୟ କର । ନିଜର ଅଭିଜ୍ଞତା ସଂଗ୍ରହ କର । ତା'ପରେ ମୋତେ ଜଣାଅ ପାପୀ କିଏ ! ପୁଣ୍ୟାତ୍ମା କିଏ ।''

ଶ୍ୱେତାଙ୍କ ଗଲେ ପାଟଳିପୁତ୍ରର ଜଣେ ତରୁଣ ରାଜା ବିଜିଗୁପ୍ତଙ୍କ ପ୍ରାସାଦକୁ । ବିଶାଳଦେବ ଗଲେ ଜଣେ ପ୍ରତିଷ୍ଠିତ ଯୋଗୀ କୁମାରଗିରିଙ୍କ ଆଶ୍ରମକୁ ।

ବିଜିଗୁପ୍ତ ଉପଭୋଗ କରୁଥିଲେ ପାଟଳିପୁତ୍ରର ସ୍ୱନାମଧନ୍ୟା ନର୍ତ୍ତକୀ ଚିତ୍ରଲେଖାର ସଙ୍ଗୀତ, ନୃତ୍ୟର ସାନ୍ନିଧ୍ୟ । ଚିତ୍ରଲେଖାଙ୍କ ବୀଣାର ତାନ, ଘୁଙ୍ଗୁରର ଧ୍ୱନିରେ ଭରିଉଠିଥିଲା ବିଜିଗୁପ୍ତଙ୍କ ସମସ୍ତ ପ୍ରାସାଦ; ବିଜିଗୁପ୍ତଙ୍କର ସମସ୍ତ ହୃଦୟ । ଚିତ୍ରଲେଖାଙ୍କର ଥିଲା ଅସୀମ ବୁଦ୍ଧି, ଅଶେଷ ନୈପୁଣ୍ୟ ଓ ଅତୁଳନୀୟ ସୌନ୍ଦର୍ଯ୍ୟ । ପାଟଳିପୁତ୍ରର ଧନ-ଜନ ତାଙ୍କରି ପାଦତଳେ ଲୋଟି ଯାଉଥିଲା— ତାଙ୍କ ସାମାନ୍ୟ ଇଙ୍ଗିତରେ, ତାଙ୍କରି କ୍ଷଣିକ ଇଶାରାରେ । ତାଙ୍କର କଳାର ବିସ୍ତୃତି ଥିଲା ଦେଶଦେଶାନ୍ତରରେ । ସେ ମଧ୍ୟ ଆକୃଷ୍ଟ ହେଲେ ବିଜିଗୁପ୍ତଙ୍କ ଶିକ୍ଷା, ସଂସ୍କୃତି ଓ ସୌନ୍ଦର୍ଯ୍ୟରେ । ବିଜିଗୁପ୍ତ, ଚିତ୍ରଲେଖାଙ୍କ ମିଳନ ହେଲା ସାତ୍ତ୍ୱିକ ସ୍ତରରେ, ମାନସିକ ଭିତ୍ତିରେ, ଶାରୀରିକ ରୂପରେ । ଏ ମିଳନ କ୍ରମେ କ୍ରମେ ସମ୍ୟକ୍, ସଂପୂର୍ଣ୍ଣ ଓ ଗଭୀର ହୋଇ ଉଠିଲା । ଅବିଚ୍ଛେଦ୍ୟ ହେଲେ ଏ ଦୁଇ ଆତ୍ମା, ଦୁଇ ମନ, ଦୁଇ ଶରୀର ।

ବିଜିଗୁପ୍ତଙ୍କ ବିବାହପାଇଁ ନାନାଦି ପ୍ରସ୍ତାବ ଅନ୍ୟାନ୍ୟ ରାଜକୀୟ ପରିବାର ତରଫରୁ ଆସିଲା । ବିଜିଗୁପ୍ତ ଗ୍ରହଣ କଲେ ନାହିଁ । କିନ୍ତୁ ପାଟଳିପୁତ୍ରର ତତ୍କାଳୀନ ମହାରାଜଙ୍କ କନ୍ୟା ଯଶୋଧାରାଙ୍କ ପାଇଁ ବିବାହ ପ୍ରସ୍ତାବକୁ ସେ ସହଜରେ ପ୍ରତ୍ୟାଖ୍ୟାନ କରିପାରିଲେ ନାହିଁ । କାରଣ ପ୍ରସ୍ତାବ କରିଥିଲେ ସ୍ୱୟଂ ମହାରାଜ ।

ଦିନେ ସଂଧ୍ୟାରେ ବିଜିଗୁପ୍ତଙ୍କ ପ୍ରାସାଦକୁ ଆସନ୍ତି ପାଟଳିପୁତ୍ରର ଯୋଗୀଶ୍ରେଷ୍ଠ କୁମାରଗିରି । ତାଙ୍କ ଚକ୍ଷୁର ଜ୍ୟୋତି, ଶରୀରର ଆଭା ସଭାସ୍ଥଳିକୁ ଆଲୋକିତ କରୁଥାଏ । ଯୌବନ ବ୍ରହ୍ମଚର୍ଯ୍ୟରେ ଉଦ୍ଦୀପିତ । ସମସ୍ତ ସଭାସଦ୍ ପ୍ରଣିପାତ ଜଣାଇଲେ ଯୋଗୀଙ୍କ ପାଦତଳେ । ସ୍ୱୟଂ ମହାରାଜ ମଧ୍ୟ । ଚିତ୍ରଲେଖା ନୃତ୍ୟପାଇଁ ସଜ୍ଜିତା । କେଶର ଚତୁଷଟି ପୁଷ୍ପମାଳା ବକ୍ଷ

ପର୍ଯ୍ୟନ୍ତ ଲୋଟି ଆସିଛି । କବରୀ ଉନ୍ମୁକ୍ତ । ଚକ୍ଷୁରେ କଜ୍ଜ୍ୱଳ । ଓଷ୍ଠର ରକ୍ତାଭା ଜଗତର ସମସ୍ତ ପୌରୁଷକୁ ଫୁତ୍‌କାର ଜଣାଉଛି । ପାଦ ନୂପୁରର ମୃଦୁଧ୍ୱନି ଜଣାଉଛି ନିମନ୍ତ୍ରଣ । ସଭାସଦ୍‌ଙ୍କ ଅଭିବାଦନ ପରେ ଆଗେଇ ଆସିଲେ ଚିତ୍ରଲେଖା । ନମସ୍କାରର ଇଙ୍ଗିତ କରି କହିଲେ—

''ଯୋଗୀଶ୍ରେଷ୍ଠ କୁମାରଗିରିଙ୍କୁ ନର୍ତ୍ତକୀ ଚିତ୍ରଲେଖାର ପ୍ରଣାମ ।''

କୁମାରଗିରି ଉତ୍ତର ଦେଲେ, ''ଏ ଅନ୍ଧକାରକୁ ଆଲୋକର ଆଶୀର୍ବାଦ ।''

''ଅନ୍ଧକାର ପ୍ରକଟିତ ହେଉ ଆଲୋକର ସଂସ୍ପର୍ଶରେ, କିନ୍ତୁ ଆଲୋକ ନିଶ୍ଚିହ୍ନ ନ ହେଉ ଅନ୍ଧକାର ଛାୟାରେ ।''
—ଚିତ୍ରଲେଖା ଜଣାଇଲେ ।

କୁମାରଗିରି କହିଲେ, ''ଗଭୀର ଆତ୍ମବିଶ୍ୱାସ ଭ୍ରମାତ୍ମକ ହେଲେ ମଧ୍ୟ ସର୍ବଦା ସମ୍ମାନଯୋଗ୍ୟ । କିନ୍ତୁ ଏ ଆତ୍ମବିଶ୍ୱାସର ଉପଯୁକ୍ତ ବିନ୍ୟାସ ହେଲେ ମନୁଷ୍ୟ ଅତିମାନବ ହେବା ସମ୍ଭବ । ଭଗବାନଙ୍କ ଆଶ୍ରା ଗ୍ରହଣ କର ନର୍ତ୍ତକୀ ! ଶୁଦ୍ଧ ହେବ, ହେବ ନିଷ୍ପାପ ।''

ଉତ୍ତର କଲେ ଚିତ୍ରଲେଖା, ''ଯାହାର କଳଙ୍କ, ତା'ର ମାର୍ଜନା ବିଧେୟ । କିନ୍ତୁ ଯେ ପବିତ୍ର ଓ ଅପବିତ୍ର ସୀମାନ୍ତର ଊର୍ଦ୍ଧ୍ୱରେ, ଯାହା ପାଖରେ ପାପ ପୁଣ୍ୟର ବିଚାର ଅତି ଗୌଣ, ତା' ପକ୍ଷରେ ଭଗବାନଙ୍କ ସ୍ଥିତି ନିଷ୍ପ୍ରୟୋଜନ । ଭଗବାନ ତ ମନୁଷ୍ୟର ସୃଷ୍ଟି । ସ୍ୱାର୍ଥସାଧନରେ ଉଦ୍ଦିଷ୍ଟ ।''

ସଭାସଦ୍ ଉପଭୋଗ କରୁଥିଲେ ଚିତ୍ରଲେଖା ଓ କୁମାରଗିରିଙ୍କର ଏ ବାକ୍ୟ ବିନିମୟ ।

ଅସ୍ୱସ୍ତି ଅନୁଭବ କଲେ କୁମାରଗିରି । ଉତ୍ତେଜିତ ହେଲା ତାଙ୍କର ଚକ୍ଷୁ । କ୍ଷିପ୍ରତର ହେଲା ଧମନୀ । ଉଷ୍ଣ ହେଲା ସ୍ନାୟୁ । ଗମ୍ଭୀର ସ୍ୱରରେ କହିଲେ, ''ଯଦି ସଭାସଦ୍ ଚାହାନ୍ତି, ବର୍ତ୍ତମାନ ଭଗବାନଙ୍କ ଅସ୍ତିତ୍ୱ ସଂକ୍ରାନ୍ତରେ ପ୍ରମାଣ ପାଇଁ ସେ ପ୍ରସ୍ତୁତ ଅଛନ୍ତି ।''

ସଭାରେ ଚାଞ୍ଚଲ୍ୟ ଖେଳିଗଲା । ସମସ୍ତେ ନୀରବ, ନିସ୍ତବ୍ଧ ହୋଇ ଚାହିଁ ରହିଲେ କୁମାରଗିରିଙ୍କୁ । ପ୍ରମାଦ ଗଣିଲେ ଚିତ୍ରଲେଖାର ଏ ଅହମିକାପୂର୍ଣ୍ଣ ବାଚାଳତା ପାଇଁ ।

ନିର୍ଦ୍ଦେଶ ଦେଲେ କୁମାରଗିରି — ''କକ୍ଷ ଅନ୍ଧକାର କର । ସମସ୍ତେ ଶାନ୍ତହୋଇ ବସନ୍ତୁ । ରାଜା, ମହାରାଜା ସମସ୍ତେ ତ୍ୟାଗ କରନ୍ତୁ ସିଂହାସନ । ଆସୀନ ହୁଅନ୍ତୁ ଭୂମି ଉପରେ ।''

ଚକ୍ଷୁ ବନ୍ଦକଲେ କୁମାରଗିରି । କକ୍ଷ ଅନ୍ଧକାର କରାଗଲା । ଧ୍ୟାନରତ ହେଲେ ଯୋଗୀଶ୍ରେଷ୍ଠ । କିଛି ସମୟ ନୀରବରେ ବିତିଗଲା । କ୍ରମେ ଶୁଣାଗଲା ଚାରିଆଡ଼େ ତୋଫାନର ଶବ୍ଦ । ସେ ଗୁରୁଗମ୍ଭୀର ତୋଫାନ କକ୍ଷ ଭିତରେ ପ୍ରବେଶ କଲାପରି ମନେହେଲା । ତାପରେ ହଠାତ୍ ଦେଖାଗଲା ଗୋଟାଏ ବିଶାଳ ଅଗ୍ନିଶିଖା ବିଜିଗୁପ୍ତଙ୍କ ସିଂହାସନ ଉପରେ ଧୁ ଧୁ ହୋଇ ଜଳିଉଠୁଛି । କିଛିସମୟ ପାଇଁ ଏ ଆଗ୍ନେୟ ପତାକା ସଭାସଦ୍‌ଙ୍କ ପାଖରେ ପ୍ରତିପାଦନ କଲା କୁମାରଗିରିଙ୍କ ସାଧନାର ପରାକାଷ୍ଠା ଓ ଭଗବାନଙ୍କ ଅସ୍ତିତ୍ୱ । ତା'ପରେ ଏ ଶିଖାର ଅବସାନ ହେଲା ।

କକ୍ଷକୁ ପୁଣି ଆଲୋକିତ କରାଗଲା । ସଭାସଦ୍ ପ୍ରଣିପାତ ଜଣାଇଲେ କୁମାରଗିରିଙ୍କ ପାଦତଳେ । କୃତାର୍ଥ ହେଲେ ଭଗବାନଙ୍କ ଦର୍ଶନରେ ।

ପ୍ରଶ୍ନକଲେ କୁମାରଗିରି ସଭାସଦ୍‌ଗଣଙ୍କୁ —"ପ୍ରମାଣ ପାଇଲେ ବର୍ତ୍ତମାନ ଭଗବାନଙ୍କ ଅସ୍ତିତ୍ୱର ?"

ସମସ୍ୱରରେ ସ୍ୱୀକାର କଲେ ଉପସ୍ଥିତ ଜନତା, କିନ୍ତୁ କେବଳ ଚିତ୍ରଲେଖା ଓ ମହାମନ୍ତ୍ରୀ ଚାଣକ୍ୟ ଅସ୍ୱୀକାର କଲେ । କହିଲେ, ଏପରି କୌଣସି ଦୃଶ୍ୟ ସେମାନେ ଦେଖିନାହାନ୍ତି ।

କୁମାରଗିରି ଅବଶେଷରେ ସ୍ୱୀକାର କଲେ ଯେ, ଏ ଦୁଇ ଜଣଙ୍କ ମାନସିକ ଶକ୍ତି ପ୍ରଖର, ଆତ୍ମବିଶ୍ୱାସ ଦୃଢ଼, ଯାହାଫଳରେ କି ତାଙ୍କର ଏ ମାନସିକ ଶକ୍ତିର ପ୍ରକ୍ରିୟାକୁ ସେମାନେ ଅବଜ୍ଞା କଲେ ।

ନିରୁତ୍ସାହିତ ହେଲେ ସଭାସଦ୍‌ଗଣ । କିନ୍ତୁ ଆଗ୍ରହୀ ହେଲେ ଚିତ୍ରଲେଖା । କୁମାରଗିରିଙ୍କ ଦାମ୍ଭିକତା, ସୌରଭ, ରୂପଜ୍ଞାନରେ ଅଭିଭୂତ ହେଲେ । ଭାବିଲେ, ସେ ମଧ୍ୟ ଯୋଗସାଧନା କରିବେ କୁମାରଗିରିଙ୍କ ପାଖରେ । ଆୟତ୍ତ କରିବେ ଏ ରୂପବାନ୍, ଗୁଣବାନ୍,ତରୁଣଯୋଗୀ କୁମାରଗିରିଙ୍କୁ । ଆୟତ୍ତ କରିବେ ଏ ଯୋଗସାଧନାକୁ । ପ୍ରମାଣ କରିବେ ଯେ, ସେ ମଧ୍ୟ ତାଙ୍କର ଏକାଗ୍ରତା ବଳରେ କୁମାରଗିରିଙ୍କ ପରି ତଥାକଥିତ ଭଗବାନ ଲାଭ କରିପାରନ୍ତି । ତା'ଛଡ଼ା ମୁକ୍ତ କରିବେ ବିଜିଗୁପ୍ତଙ୍କୁ ତାଙ୍କର ସାଂସାରିକ ଦାୟିତ୍ୱ ସମ୍ପନ୍ନ କରିବାପାଇଁ; ବିବାହ କରିବାପାଇଁ ଯଶୋଧାରାଙ୍କୁ । ସମାଜରେ, ରାଜ୍ୟରେ, ସମ୍ମାନାସ୍ପଦ ହେବେ ବିଜିଗୁପ୍ତ ।

ବିଜିଗୁପ୍ତଙ୍କ ପ୍ରାସାଦ ପରିତ୍ୟାଗ କରି ଚିତ୍ରଲେଖା ପହଞ୍ଚିଲେ କୁମାରଗିରିଙ୍କ ଆଶ୍ରମରେ ଯୋଗସାଧନା ପାଇଁ ।

ଇତିମଧ୍ୟରେ ଜ୍ଞାନ, ରୂପ ଯୋଗୁଁ ଶ୍ୱେତାଙ୍କ ପ୍ରତି ଆକୃଷ୍ଟ ହୁଅନ୍ତି ଯଶୋଧାରା । ତାଙ୍କ ନିକଟରେ ନିଜର ପ୍ରେମ ନିବେଦନ

ଜଣାନ୍ତି । ଶ୍ୱେତାଙ୍କ ମଧ୍ୟ ଏ ପ୍ରେମ ନିବେଦନକୁ ଗ୍ରହଣ କରନ୍ତି । କିନ୍ତୁ ମହାରାଜା ହେଲେ ଅନ୍ତରାୟ । କହିଲେ ରୂପ ଅଛି, ଗୁଣ ଅଛି ସତ, କିନ୍ତୁ ଶ୍ୱେତାଙ୍କଙ୍କର ଆର୍ଥିକ ସଙ୍ଗତି ନାହିଁ; ସାମାଜିକ ପ୍ରତିଷ୍ଠା ନାହିଁ । ଯଶୋଧାରା ସହିତ ଶ୍ୱେତାଙ୍କଙ୍କର ବିବାହ ଅସମ୍ଭବ ।

ମଦ୍ୟପ, ଲମ୍ପଟ ବିଜିଗୁପ୍ତଙ୍କ ମନ ଅସ୍ଥିର ହେଲା । ଚିତ୍ରଲେଖାଙ୍କ ବିହୁନେ ଅନ୍ଧକାର ଲାଗିଲା ଏ ରାଜ୍ୟଭୋଗ । ସ୍ଥିର କଲେ, ସେ ରାଜ୍ୟଛାଡ଼ି ଚାଲିଯିବେ । ସମସ୍ତ ରାଜ୍ୟ ଦେଇଯିବେ ଶ୍ୱେତାଙ୍କଙ୍କୁ । ଶ୍ୱେତାଙ୍କ ଦେଶକୁ ଶାସନ କରିପାରିବେ, ପ୍ରତିଷ୍ଠା ପାଇପାରିବେ, ବିବାହ କରିପାରିବେ ଯଶୋଧାରାଙ୍କୁ । ଯଶୋଧାରାଙ୍କ ପ୍ରତି ତାଙ୍କର କର୍ତ୍ତବ୍ୟ ମଧ୍ୟ ସମ୍ପୂର୍ଣ୍ଣ ହେବ ।

ଦିନେ ସଭାସଦ୍‌ମାନଙ୍କୁ ନିମନ୍ତ୍ରଣ କରି ନିଜର ସିଦ୍ଧାନ୍ତ ଜଣାଇ, ଶ୍ୱେତାଙ୍କଙ୍କୁ ସମର୍ପି ଦେଲେ ରାଜ୍ୟ, ଶାସନ ଓ ଯଶୋଧାରା । ଏଣେ ଚିତ୍ରଲେଖାଙ୍କ ରୂପ ଯୌବନ ସ୍ଖଳିତ କଲା ଯୋଗୀ କୁମାରଗିରିଙ୍କୁ । ଏକାଗ୍ରତା ନଷ୍ଟ ହେଲା, ଯୋଗ ହେଲା ଭ୍ରଷ୍ଟ । ଦିନେ ନିଜର ଅଭିପ୍ରାୟ ଜଣାଇଲେ ଚିତ୍ରଲେଖାଙ୍କ ପାଖରେ । ଶାରୀରିକ ଉପଭୋଗର ମୋହ ଉନ୍ମୋଚନ କଲେ । ଅନିଚ୍ଛାସତ୍ତ୍ୱେ ଚିତ୍ରଲେଖା ସେ ରାତ୍ରିରେ ନିଜକୁ ବିଛାଇଦେଲେ କୁମାରଗିରିଙ୍କ ଦୁର୍ଦ୍ଧର୍ଷ କ୍ଷୁଧାର ପାଦତଳେ ।

ଯୋଗୀ, ଚିତ୍ରଲେଖାର ଶରୀରକୁ ସେଦିନ ଉପଭୋଗ କଲେ । କିନ୍ତୁ ହରାଇ ବସିଲେ ଚିତ୍ରଲେଖାର ସମ୍ମାନ ଚିରଦିନ ପାଇଁ । ଚିତ୍ରଲେଖା ଘୃଣାକଲେ ନିଜକୁ — ଜଣେ ସାଧକଙ୍କୁ ତାଙ୍କର ସାଧନାରୁ ଭ୍ରଷ୍ଟ କରାଇଲେ ବୋଲି । ଘୃଣାକଲେ ଯୋଗୀଙ୍କୁ ତାଙ୍କର ଆତ୍ମନିୟନ୍ତ୍ରଣର ଅଭାବ ଓ ଗୁପ୍ତକାମନାର ପ୍ରକାଶ ପାଇଁ । ସେହି ରାତ୍ରିରେ ଚିତ୍ରଲେଖା ତ୍ୟାଗକଲେ କୁମାରଗିରିଙ୍କ

ଆଶ୍ରମ । ଚିତ୍ରଲେଖା ପହଞ୍ଚିଲେ ବିଜିଗୁପ୍ତଙ୍କ ନିକଟରେ । ପ୍ରଣାମ ଜଣାଇଲେ । କହିଲେ, ''ବିଜିଗୁପ୍ତ, ମୁଁ ଫେରିଆସିଛି ତୁମରି ପାଦତଳକୁ ।''

''ଚିତ୍ରଲେଖା, ତୁମେ ଆସିଲ ସତ, କିନ୍ତୁ ଅନେକ ଡେରିରେ । ବର୍ତ୍ତମାନ ମୁଁ ରାଜ୍ୟହୀନ, ଅର୍ଥହୀନ, ଗୌରବହୀନ । ତୁମର ଉପଚାର ପାଇଁ ମୋ ପାଖରେ କିଛି ସମ୍ପଦ ନାହିଁ'' — ବିଜିଗୁପ୍ତ ଜଣାଇଲେ ।

''ବିଜିଗୁପ୍ତ ! ମୋର ଅର୍ଥର ଅଭାବ ନାହିଁ । କେବଳ ଗୋଟିଏ ମାତ୍ର ଶୂନ୍ୟତା ଅଛି, ଯାହାକି ତୁମେ କେବଳ ପରିପୂର୍ଣ୍ଣ କରିବ । ମୁଁ ଚାହେଁ ଏହି ମନୁଷ୍ୟଟିକୁ । ହେଉପଛେ ରଙ୍ଗହୀନ, ସମ୍ପଦହୀନ, ଗୌରବହୀନ— କିନ୍ତୁ ହୋଇଥିବ ବିଜିଗୁପ୍ତ ।''

ଚିତ୍ରଲେଖା ବିଲୟ କଲେ ନିଜର ସମ୍ପଦକୁ । ସଂସାର ସହିତ ସମସ୍ତ ଅର୍ଥନୈତିକ ସମ୍ପର୍କ ବିଚ୍ଛିନ୍ନ କଲେ ।

ମୁକ୍ତ ହେଲେ ବିଜିଗୁପ୍ତ; ମୁକ୍ତ ହେଲେ ଚିତ୍ରଲେଖା । ଦୁଇଟି ମନୁଷ୍ୟ ସେଦିନ ପ୍ରଭାତରେ ସୂର୍ଯ୍ୟଙ୍କ ଦିଗକୁ ଆଗେଇ ଚାଲିଲେ ।

ଗୁରୁଦେବ ପ୍ରଶ୍ନ କରୁଥିଲେ ଏହି ବିଜିଗୁପ୍ତ ଓ କୁମାରଗିରିଙ୍କ ସଂକ୍ରାନ୍ତରେ । ପାପ କ'ଣ ? ପୁଣ୍ୟ କ'ଣ ?

ଉପସଂହାର କରି ଗୁରୁଦେବ କହିଲେ, ପାପ ପୁଣ୍ୟ ମାନସିକ ପ୍ରକ୍ରିୟାର ପରିଣାମ । ବ୍ୟକ୍ତିର ଦୃଷ୍ଟିଭଙ୍ଗୀର ଉପସଂହାର ।

ସାଧାରଣ ବିଚାରରେ ବିଜିଗୁପ୍ତ ପାପୀ, କିନ୍ତୁ ତାଙ୍କର ଉନ୍ନତ ମାନବିକତା ପରାଜିତ କରିଛି ଯୋଗୀ କୁମାରଗିରିଙ୍କ ସାଧନାକୁ ।

ବ୍ୟକ୍ତିର ବିଚାର ପାଇଁ ତତ୍‌କାଳୀନ ମୂଲ୍ୟବୋଧର ଧାର୍ଯ୍ୟ ସୀମା ଯଥେଷ୍ଟ ନୁହେଁ । ଯୁଗେ ଯୁଗେ ବ୍ୟକ୍ତିର ବିଚାର ହୋଇଛି ତା'ର ମନୁଷ୍ୟତା ଜରିଆରେ ।

ଆଉ କାଉଲ୍ ମଦ୍ୟପ, ଲମ୍ପଟ, ଭ୍ରଷ୍ଟ, ଚରିତ୍ରହୀନ ସତ, କିନ୍ତୁ ତାଙ୍କର ମହାନ ମନୁଷ୍ୟତା ପାଖରେ ଏସବୁ କଳଙ୍କ ନିଷ୍ପ୍ରଭ, ଗୌଣ ହୋଇଉଠିଛି ।

✶ ✶ ✶

## ପ୍ରିୟ କାଉଲ୍,

ତୁମେ ଆଜି ନିରୁଦ୍ଦିଷ୍ଟ ।

ତୁମକୁ ଅନେକ ଖୋଜା ହେଲାଣି । ଦିଲ୍ଲୀ, ବମ୍ବେ, ମାନ୍ଦ୍ରାଜ ସବୁଠାରେ ଖୋଜା ହେଲା । ଯେତେସବୁ ଠିକଣା ମନେପଡ଼ିଲା— ହଂକଂ, ଲଣ୍ଡନ, ଭିଏନାରେ ତୁମ ବନ୍ଧୁବାନ୍ଧବୀମାନଙ୍କ ପାଖକୁ ଚିଠି ଯାଇ ଫେରିଆସିଲାଣି । କିନ୍ତୁ ତୁମର ପତ୍ତା ମିଳିନାହିଁ । ଖବରକାଗଜରେ ତୁମର ଫଟୋ ଛାପା ହେଲାଣି । ତୁମର ବ୍ୟବସାୟୀ ବନ୍ଧୁମାନେ ବି କିଛି ଖବର ଦେଇପାରୁନାହାନ୍ତି । ତୁମେ କେଉଁଠି ଅଛ ଜାଣିବା ଆଉ ସମ୍ଭବ ନୁହେଁ । କହିବା ପାଇଁ କଷ୍ଟ ହେଉଛି, ତୁମେ ବଞ୍ଚିଚ କି ନାହିଁ ତା' ବି ନିଧାର୍ଯ୍ୟ ନୁହେଁ ।

ମୋ ପାଖରେ ତୁମର ଗୋଟାଏ ଅମାନତ ଅଛି । ମନୀଷାର ଶେଷ ଚିଠି । ତୁମପାଇଁ । ତାକୁ ନେଇ କ'ଣ କରିବି କିଛି

ସ୍ଥିର କରି ପାରୁନାହିଁ । ସେ ତ ଚିଠି ନୁହେଁ; ସିଏ ପିଚ୍ଛୁଳାଏ ରକ୍ତ । ନାରୀତ୍ୱର ଯାହା ଗୌରବମୟ, ଯାହା ସୌରଭପୂର୍ଣ୍ଣ, ଯାହାକିଛି ଗର୍ବର ସମ୍ଭାର, ତା'ର ଅର୍ଘ୍ୟରେ ତୁମରି ଜୀବନବେଦୀ ତଳେ ତ୍ୟାଗର ଗୌରୀଶଙ୍କର ସୃଷ୍ଟି କରିଛି ତୁମରି ମନୀଷା । କେଉଁ ଅଶୁଭମୁହୂର୍ତ୍ତରେ ତୁମେ ତାକୁ ନିଜର କରିଥିଲ, ତା'ର ପରିଚୟ ଇତିହାସ ପୃଷ୍ଠାରେ ରହିବ ନାହିଁ । ତା' ପାଇଁ କେହି ତାଜ୍‌ମହଲ ତୋଳିବେ ନାହିଁ । ଦରକାର ନାହିଁ । ସେ ସ୍ୱୟଂ ମହାତାଜ୍‌ମହଲ । ପଥରରେ ସେ ତିଆରି ନୁହେଁ ଯେ କାଳ ତାକୁ କ୍ଷୟ କରିପାରିବ । ଲୋତକ, ଦୀର୍ଘଶ୍ୱାସ, ପ୍ରାଣ ଦେଇ ସେ ସୃଷ୍ଟି । ସେଥିପାଇଁ ସେ ତ୍ରିକାଳ-ବିଜୟୀ, ସନାତନ, ମୃତ୍ୟୁଞ୍ଜୟୀ, ଶାଶ୍ୱତ ।

କାଉଲ୍, ଯଦି କେବେ ସମୟ ପାଅ, ଯିବ ମନୀଷାର କୋଠରିକୁ । ସେ ସ୍ଥାନ ଯେକୌଣସି ମନ୍ଦିର ମସ୍‌ଜିଦ୍‌ଠାରୁ ଆହୁରି ପବିତ୍ର । ଆହୁରି ମହୀୟାନ୍ । ହୁଏତ ସନ୍ଧାନ ପାଇବ ଗୋଟିଏ କ୍ଷୁବ୍‌ଧ ଅଶାନ୍ତ ଆତ୍ମା ଘୂରିବୁଲୁଛି ତୁମର ଟିକେ ଦର୍ଶନ ପାଇଁ; ଟିକେ ପରଶ ଲାଗି । ତୁମେ ଅବହେଳା କରିବ ନାହିଁ କାଉଲ୍, ଏହାହିଁ ତୁମପ୍ରତି ମୋର ଏକାନ୍ତ ଦାୟିତ୍ୱ ।

## ଝନ୍ ନ୍ ନ୍ ନ୍

ହୋଇପାରେ ବୋତଲ, ନ ହେଲେ କାଚଗିଲାସଟା । ମୁଣ୍ଡ ପାଖରେ ସାନ ଟେବୁଲ ଉପରୁ ହଠାତ୍ ତଳେ ପଡ଼ିଗଲା । ଟେବୁଲ ଲ୍ୟାମ୍ପର ନାଇଲନ୍-ଝାଡ଼ଣଟା ଥରି ଉଠିଲା । ଗୋଲ୍ଡ଼ ଏମ୍ବ୍ରୟଡ଼ରି କରା ଡ୍ରାପିଙ୍ଗ ଟିକିଏ ହଲିଗଲା । କାନ୍ଥର ଅଏଲ ପେଣ୍ଟିଂ, ଟେବୁଲ ଉପର ବାଇବେଲ, କଣରେ ରେଡ଼ିଓଗ୍ରାମ୍, ସମସ୍ତେ ଆଘାତ ପାଇଲେ । ପ୍ରାତଃ ନିସ୍ତବ୍ଧତାର ଶାନ୍ତ ବକ୍ଷ ଉପରେ ଗୋଟାଏ କ୍ଷୁଦ୍ର ଘୂର୍ଣ୍ଣିବାୟୁ କ୍ଷଣିକ ଆଲୋଡ଼ନ ସୃଷ୍ଟି କଲା । ଆଖିର ପରଦା ଫିଟିଗଲା ମିଷ୍ଟର କାଉଲ୍‌ଙ୍କର ।

ରାତ୍ରି ବିଦାୟୋନ୍ମୁଖୀ । କାକୁତି ମିନତିରେ ହାତଯୋଡ଼ି ଶେଷପ୍ରଣାମ କରି କହୁଛି— ଯାଉଛି ବନ୍ଧୁ !, କିନ୍ତୁ ଭୁଲିବ ନାହିଁ । ମୁଁ ପୁଣି ଆସିବି ଦେହ ମନର ସବୁ ସମ୍ଭାର ନେଇ । ମୋର ଅନ୍ଧକାର ବକ୍ଷରେ ତୁମର ଶୂନ୍ୟତାକୁ ପୁଣି ଭରିଦେବି । ମୋର ଶେଷ ଅଣୁକଣା ବିନ୍ଦୁ ଢାଳି ପରିପୂର୍ଣ୍ଣ କରିବି ତୁମର କ୍ଷୁବ୍ଧ ହିଆ । ତୁମର ଆତ୍ମା ହେବ ତୁଷ୍ଟ—ମାଂସ ହେବ ଶିଥିଳ ।

ମିଷ୍ଟର କାଉଲ୍ ବିଛଣାର ଗଦି ଉପରୁ ଝୁଙ୍କି ପଡ଼ିଲେ ତଳକୁ—ଏ ଶବ୍ଦର ଉତ୍ପତ୍ତିକୁ ଆବିଷ୍କାର କରିବା ପାଇଁ । ଉଲଗ୍ନ ଦେହର ଆବରଣ ଛାତି ଉପରୁ ଖସି ପଡ଼ିଲା ।

ଝଣାତ୍— । ଏ ଶବ୍ଦଟା ଜନ୍ମନେଲା ଏକ ସଂଘାତରୁ । ଜୀବନ୍ୟାସ ପାଇଲା । ଅସ୍ତିତ୍ୱ ପ୍ରତିପାଦନ କଲା— କିୟତ୍ ମୁହୂର୍ତ୍ତ ପାଇଁ । ନିଷ୍କୃତି ପାଇଲା । ତାପରେ ଲୀନ ହୋଇଗଲା ସମୟର ଅନନ୍ତ କୋଳରେ । ସମାପ୍ତି ହେଲା । ମାର୍ବଲ୍ ଫ୍ଲୋର୍ ଉପରେ ବିଛୁଡ଼ି ହୋଇ ପଡୁଥାଏ କାଚର ଅନେକ କ୍ଷୁଦ୍ରାଂଶ—ଅତୀତର ଏ ସୃଷ୍ଟି, ସ୍ଥିତି ଓ ବିଲୟର ପ୍ରମାଣ ସ୍ୱରୂପ । ମିଷ୍ଟର କାଉଲ୍ ଭାବିଲେ ଏ ମୁହୂର୍ତ୍ତଟି, ଏ କଲ୍ଲୋଳଟି ସମୟର ଅତଳ ଗର୍ଭରେ ବୁଡ଼ିଯାଇଛି । ଏହାର ପୁନର୍ଜନ୍ମ ଆଉ ସମ୍ଭବ ନୁହେଁ । ଏ ତିରୋଧାନର ଆଉ ପ୍ରତ୍ୟାବର୍ତ୍ତନ ନାହିଁ ।

କିଛି ହୁଇସ୍କି ବି ତଳେ ଢାଳି ହୋଇଯାଇଥାଏ ଚଟାଣରେ—ଚାରିକୋଣିଆ ଧଳାକଳା ମାର୍ବଲ ପଥର ସବୁର ଚଉହଦିକୁ ଆଶ୍ରାକରି । ବିଛଣା ଉପରେ ପଡ଼ିରହି ଅଙ୍ଗୁଳିରେ ଚଟାଣ ଉପରେ ଭଙ୍ଗାକାଚଗୁଣ୍ଡି ଓ ହୁଇସ୍କିକୁ ଠୁଳ କରୁଥାନ୍ତି ମିଷ୍ଟର କାଉଲ୍—ଅନ୍ୟମନସ୍କ ଭାବରେ । ଚାଦରଟା ଝିଙ୍କି ହୋଇ ଆସିଲା ତାଙ୍କ ପାଖକୁ । ମିସ୍ ନୀରାଙ୍କ ନିଦ ଭାଙ୍ଗିଗଲା । ମିସ୍ ନୀରା କୋଠରିର ଚାରିଆଡ଼କୁ ଆଖିବୁଲାଇ ପର୍ଯ୍ୟବେକ୍ଷଣ କରିନେଲେ ବର୍ତ୍ତମାନକୁ । ଏ ପ୍ରଭାତ, ଏ ପରିସର, ଏ କାଉଲ୍ । ଅତୀତ ରାତ୍ରିର ଇତିହାସକୁ ଅତି ଚୁମ୍ବକରେ ଆଉଡ଼ାଇ ନେଲେ । ନିଜ ଦେହକୁ କିଛିକ୍ଷଣ ପାଇଁ ଲକ୍ଷ୍ୟ କରି ପାଖରେ ଥୁଆହୋଇଥିବା ପରଫିଉମ୍‌ର ସ୍ପ୍ରେରେ ନିଜର ଛାତିକୁ ଭିଜାଇ ନେଲେ । କର ଲେଉଟାଇ ମିଷ୍ଟର କାଉଲ୍‌ଙ୍କ ପିଠିରେ ନିଜକୁ ଅଜାଡ଼ି ଦେଇ କୋମଳ ସ୍ୱରରେ କାନ ପାଖରେ କହିଲେ— "ଡାର୍ଲିଂ !"

ମିଷ୍ଟର କାଉଲ୍ କାଚର ଗୁଣ୍ଡିସବୁକୁ ଦେଇ ଚଟାଣରେ ବନ୍ଧ ବାନ୍ଧୁଥାନ୍ତି ହୁଇସ୍କିର । ଭଙ୍ଗାକାଚର ଧାରରେ ଅଙ୍ଗୁଳିରୁ ରକ୍ତ ବାହାରି ହୁଇସ୍କିର କିଛି

ଅଂଶ ଲାଲ ହୋଇଯାଉଥାଏ । ମଝିରେ ମଝିରେ କାଚର ଏ ବନ୍ଧତଳେ ଲାଲ ହୁଇସ୍କିର ଧାର ବୋହି ଯାଉଥାଏ ଚଟାଣର ଅନ୍ୟ ପଥରକୁ । ବନ୍ଧର ଚଉହଦିକୁ ବିସ୍ତୃତ କରୁଥାନ୍ତି ମିଷ୍ଟର କାଉଲ୍ । ପରଦା ଭେଦି ପ୍ରଭାତୀ ଆଲୋକ କ୍ରମଶଃ କୋଠରିକୁ ଉଜ୍ଜ୍ୱଳ କରିଲାଣି ।

ମିସ୍ ନୀରା ଗଭୀର ଆଲିଙ୍ଗନ କରି ପଛଆଡୁ କାଉଲ୍‌ଙ୍କ ମୁହଁରେ ହାତ ବୁଲାଇ ଆଉ ଥରେ ସାମାନ୍ୟ ଉଚ୍ଚ ସ୍ୱରରେ ଡାକିଲେ, ''ଡାର୍ଲିଂ !''

ମିଷ୍ଟର କାଉଲ୍ ଶାନ୍ତ ସ୍ୱରରେ ଜବାବ ଦେଲେ, ''ଇଏସ୍ ।''

''ପ୍ରଭାତ ହୋଇ ଆସିଲାଣି ।''

''ଇଏସ୍ ।''

''ଯିବାପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ ।''

''ହୁଁ ।''

ନିକଟତମ ସୋଫା ଉପରେ ଖେଳାଇ ହୋଇ ପଡ଼ିଥିଲା ତାଙ୍କର ନାଇଲନ୍ ଶାଢ଼ି, ଫ୍ଲାନେଲ ବ୍ଲାଉଜ୍, ସିଲକ୍ ସାୟା ଇତ୍ୟାଦି । ମିଷ୍ଟର କାଉଲ୍‌ଙ୍କର ଡ୍ରେସିଂ ଗାଉନ୍‌ଟାକୁ ଗୋଡ଼ତଳୁ ଉଠାଇ ନେଇ ନିଜର ଶରୀରକୁ ଆବୃତ କରିନେଲେ ମିସ୍ ନୀରା । ଗଲେ ବାଥ୍‌ରୁମ୍ ଭିତରକୁ—ନିଜର ପ୍ରସାଧନ ଉଦ୍ଦେଶ୍ୟରେ ।

କାଉଲ୍ ବନ୍ଧ ବାନ୍ଧିବାର ଏ ଉଦ୍‌ଯୋଗ ଫଳରେ କ୍ରମଶଃ ଆହତ ହେଉଥାନ୍ତି । ଅଙ୍ଗୁଳିର ବିଭିନ୍ନ କୋଣରୁ ରକ୍ତ ବିନ୍ଦୁମାନ ନିର୍ଗତ ହେଉଥାଏ । ହୁଇସ୍କିର ପରଶରେ ଟିକେ ଟିକେ ଜ୍ୱାଳା ମଧ୍ୟ ଅନୁଭବ କରୁଥାନ୍ତି ।

କ୍ଷତ ଓ ପରାସ୍ତ ହୋଇ ଏ ଯୋଜନାକୁ ସେ ପରିତ୍ୟାଗ କଲେ । ନିଜକୁ ଆବୃତ କରିଥିବା ଚାଦର ଦେଇ ଆଙ୍ଗୁଳିଟିକୁ ଜୋର୍‌ରେ ଚିପିଲେ । ରକ୍ତଗୁଡ଼ାକ ସଫା ଚାଦରରେ ଭେଦି ଶିଶୁ ହାତଅଙ୍କା ଚିତ୍ରପରି ଦେଖାଯାଉଥାଏ । ବିଭିନ୍ନ ଦିଗରୁ ଚାପଦେଇ ଆଙ୍ଗୁଳିରୁ ରକ୍ତ ବୁହାଇ ପୂର୍ଣ୍ଣାଙ୍ଗ କରୁଥାନ୍ତି ସେ ଚିତ୍ରଟାକୁ । ଅବଶେଷରେ ଚିତ୍ରଟି ଦେଖାଦେଲା ଗୋଟାଏ ଆଧୁନିକ ଆର୍ଟର ଏକ ଡିଜାଇନ ପରି । ରକ୍ତ ବି ଶୁଖିଗଲା ଆଙ୍ଗୁଳିରୁ ।

ଟେବୁଲ ଲ୍ୟାମ୍ପ୍ କଡରେ ଥୁଆ ହୋଇଥିଲା ଖଣ୍ଡେ ବହି । ଉଠାଇ ଆଣିଲେ ସେ ଖଣ୍ଡିକ । ଦେହକୁ ବୁଲାଇ ଚିତ୍‌ହୋଇ ଶୋଇ ପଡ଼ିଲେ ବିଛଣା ଉପରେ । ମିସ୍ ନୀରାଙ୍କ ତକିଆକୁ ନିଜର ତକିଆ ଉପରେ ଥୋଇ ଉଚ୍ଚ କଲେ । ପିଠିକୁ ଭରାଦେଇ ପଢ଼ି ବସିଲେ ମାର୍କ ଟ୍ୱାଇନ୍‌ଙ୍କର ‘‘ମର୍ତ୍ତ୍ୟରୁ ଚିଠି ।’’ ମର୍ତ୍ତ୍ୟରୁ ଅଭିଶପ୍ତ ‘ସଟାନ୍’ ଆସି ସ୍ୱର୍ଗକୁ ଚିଠି ଲେଖୁଛି ମାଇକେଲ୍ ଓ ଗାବ୍ରେଲଙ୍କ ପାଖକୁ ମଣିଷଙ୍କ ପ୍ରକୃତି ସଂକ୍ରାନ୍ତରେ, ପୃଥିବୀର ଅବସ୍ଥା ବର୍ଣ୍ଣନା କରି । ଏ ଲେଖାରେ ଭଗବାନ, ସମାଜ, ମଣିଷ, ଧର୍ମକୁ ଉପହାସ କରାଯାଇଛି, କଟୁ ସମାଲୋଚନା କରାଯାଇଛି । ଲେଖାର ସମ୍ପାଦକ ଲେଖିଛନ୍ତି ଯେ, ଜୀବନର ଅନ୍ତିମ କାଳରେ ମାର୍କ ଟ୍ୱାଇନ୍‌ଙ୍କ ଦର୍ଶନ ନୈରାଶ୍ୟବାଦରେ ପରିପୂର୍ଣ୍ଣ ଥିଲା । ସମାଜ, ସଂସାର ପ୍ରତି ଗଭୀର ଘୃଣା ତାଙ୍କର ହେଲା । ମଣିଷ ଜାତିକୁ ସେ ‘‘ଡାମଡ୍ ହ୍ୟୁମାନ୍ ରେସ୍’’ ବୋଲି କହୁଥିଲେ । ତାଙ୍କର ଶାରୀରିକ ବ୍ୟାଧି, କଠୋର ଦାରିଦ୍ର୍ୟ, ମାନସିକ ଜଞ୍ଜାଳ ତାଙ୍କର ଜୀବନର ଶେଷକାଳକୁ ଅନ୍ଧାର କରି ଛାଡ଼ିଦେଲା । ସ୍ରଷ୍ଟା, ଧର୍ମ, ମନୁଷ୍ୟକୁ ଉପହାସ କରି ଏ ବହି ଲେଖିଥିଲେ । ତାଙ୍କର ଝିଅ କ୍ଲାରା କ୍ଲେମସ୍ ଏହାକୁ ଅନେକ ଦିନ ଲୁଚାଇ ରଖିଥିଲେ । ଏବେ ତା’ର ପ୍ରକାଶ ହୋଇଛି ଆମେରିକାରେ । କୌଣସି ଜଣେ ଆମେରିକାନ୍ ବନ୍ଧୁ ଏ ଉପହାର ଦେଇଥିଲେ ମିଷ୍ଟର କାଉଲ୍‌ଙ୍କୁ ।

ମିସ୍ ନୀରା ଫେରି ଆସିଲେଣି ବାଥ୍‌ରୁମ୍‌ରୁ । ସଦ୍ୟ ଫୁଟନ୍ତା ଗୋଲାପଫୁଲ ପରି ଦେଖା ଯାଉଥାନ୍ତି । ଊର୍ଦ୍ଧ୍ୱଗାମୀ କେଶଗୁଚ୍ଛକୁ ନେଟ୍ ଭିତରେ

ସଂଯତ କରି ରଖିଅଛନ୍ତି । ଆଖିରେ ଦେଇଛନ୍ତି କଜ୍ଜ୍ବଳ । ରେଖାଟି ଆଖିରୁ ବାହାରି ଟିକିଏ ଉପରକୁ ଉଠି ଆସିଛି ଅର୍ଦ୍ଧଚନ୍ଦ୍ରର ଭଙ୍ଗୀରେ । ଓଠରେ ଦେଇଛନ୍ତି ପିଙ୍କ୍ ରଙ୍ଗର ଲିପ୍‌ଷ୍ଟିକ । ପୂରନ୍ତା ଗାଲଗୁଡ଼ିକ ରୋଜ୍ ପାଉଡ଼ରରେ ରକ୍ତାଭ ହୋଇଉଠିଛି । ପତଳା ବ୍ଲାଉଜ ଭିତରୁ ବ୍ରେସିୟାର ଷ୍ଟ୍ରାପ୍ ସବୁ ବାହାରକୁ ଜଣାପଡୁଛି । ଭ୍ରୂଲତା, ରାତ୍ରିଠୁ ଆହୁରି ଦୀର୍ଘ ଓ ପ୍ରସ୍ଥ ହୋଇ ବଡ଼ ବଡ଼ ଆଖିର ଅବଗୁଣ୍ଠନ ହୋଇ ସାଜିଛି ଦେହର ପରଫିଉମ୍ । କାଉଲ୍ ପଢୁଛନ୍ତି "ସଇତାନର ଚିଠି ।" ସେ ସେଥିରେ ଲେଖିଛନ୍ତି "ପୃଥିବୀ ଗୋଟାଏ ବିଚିତ୍ର ଜାଗା— ଅସାଧାରଣ ଓ କୌତୂହଳପୂର୍ଣ୍ଣ । ଏଠାକାର ଲୋକେ ପାଗଳ, ଅନ୍ୟ ପଶୁମାନେ ମଧ୍ୟ ପାଗଳ । ସମଗ୍ର ପୃଥିବୀ ପାଗଳ । ସ୍ୱୟଂ ପ୍ରକୃତି ବି ପାଗଳ ।"

"ମଣିଷ ଯଦି ଅତି ବଡ଼ ହୁଏ, ତା'ହେଲେ ସେ ଆମ ସ୍ୱର୍ଗର ସବୁଠୁ କ୍ଷୁଦ୍ରତମ, ନୀଚତମ, ହେୟ ଆଞ୍ଜେଲ୍ ପରି; ଆଉ ଯଦି ସାଧାରଣ ହୁଏ, ତା'ହେଲେ ସେ ଅତି ଜଘନ୍ୟ, ଭୟଙ୍କର, ବର୍ଣ୍ଣନାତୀତ । ତେବେ ବି ତା'ର ଆତ୍ମବିଶ୍ୱାସ ହାସ୍ୟାସ୍ପଦ । ସେ ନିଜକୁ ଭଗବାନଙ୍କ ସୃଷ୍ଟିର ଶ୍ରେଷ୍ଠ ଜୀବ ବୋଲି ଦାବି କରେ । ତୁମେ ବିଶ୍ୱାସ କର ଅବା ନ କର, ସେ ନିଜେ ଏ କଥାକୁ ବିଶ୍ୱାସ କରେ । ଯୁଗ ଯୁଗ ଧରି ନିଜେ ଏହି କଥା କହି ଆସିଛି । ଏ କଥାକୁ ସମସ୍ତେ ମାନି ନେଉଛନ୍ତି ମଧ୍ୟ । ଜଣେ କେହି ନାହିଁ ଯେ କି ଏ କଥାକୁ ଅବିଶ୍ୱାସ କରି ଉପହାସ କରିବ ।"

ମିସ୍ ନୀରା ପାଖକୁ ଆସି କାଉଲ୍‌ଙ୍କୁ ହଲାଇ ଦେଇ କହିଲା, "ଡାର୍ଲିଂ ! ଏତେବେଳଯାଏ ଉଠିନାହଁ ? ପଢ଼ା ବନ୍ଦକର । ଦେଖ, ମୁଁ ତିଆର ହୋଇଗଲିଣି । ଅନେକ ଡେରି ହୋଇଗଲାଣି । ଘରେ ସମସ୍ତେ ଚିନ୍ତିତ ଥିବେ ।" କାଉଲ୍ କିଛି ମୁହୂର୍ତ୍ତ ପାଇଁ ବହିରୁ ମୁହଁ ଉଠାଇ ମିସ୍ ନୀରାଙ୍କୁ ଥରେ ଦେଖିଲେ । କହିଲେ, "ମୋ କୋର୍ଟ ପକେଟରେ ପର୍ସଟା ଅଛି, ସେଥିରୁ ତିନି ଶହ ଟଙ୍କା କାଢ଼ିନିଅ ।" ପୁଣି ମନୋନିବେଶ କଲେ ମାର୍କଟ୍ୱାଇନ୍‌ଙ୍କର ଲେଖାରେ ।

''ଦିନ ନାହିଁ, ରାତି ନାହିଁ, ମଣିଷ ଡାକୁଛି ଭଗବାନଙ୍କୁ । ପ୍ରାର୍ଥନା କରି ଚାଲିଛି ସାହାଯ୍ୟପାଇଁ, ଉନ୍ନତିପାଇଁ, ରକ୍ଷାପାଇଁ । କେତେ ପ୍ରକାରର ଖୋସାମତ କରି କଥା କହୁଛି । ଅବାସ୍ତବ, ଅତିରଞ୍ଜିତ କଥା ସବୁ । ସେ ପ୍ରତିଦିନ ପ୍ରତାରିତ ହେଉଛି, ପରାଜିତ ହେଉଛି । କେବେହେଲେ ତା'ର ଏ ଆକୁଳ ପ୍ରାର୍ଥନା କାମରେ ଲାଗୁନାହିଁ । ତଥାପି ସେ ସେହିପରି ପ୍ରାର୍ଥନା କରି ଚାଲିଛି । ବଞ୍ଚିବାପାଇଁ କି ଆପ୍ରାଣ ଆଗ୍ରହ ! ପୁଣି ସେ ଭାବୁଛି, ସେ ସ୍ୱର୍ଗକୁ ମଧ ଦିନେ ନା ଦିନେ ଯିବ । ମଣିଷ ସମଗ୍ର ସୃଷ୍ଟିରେ ସବୁଠୁ ବଡ଼ ନିର୍ବୋଧ ଜୀବ...

ପ୍ରତ୍ୟେକ ହୀନତାର ମଧ ସମ୍ମାନ ଅଛି । ଏ ସମ୍ମାନର କଳ୍ପନା ହୁଏତ ପ୍ରତାରଣାପାଇଁ, ହୁଏତ ହୀନତାକୁ ସହ୍ୟ କରିବାପାଇଁ ସୃଷ୍ଟି । ଯଦି ଏହି ସମ୍ମାନ ଉପରେ ଆଘାତ ଆସେ, ହୀନତା ସହସା ହୁଏ ଉନ୍ମୋଚିତ, ଅବଗୁଣ୍ଠନ ହୁଏ ଉନ୍ମୁକ୍ତ—ବ୍ୟକ୍ତି ବିଚଳିତ ହୁଏ ।''

ମିସ୍ ନୀରା ହୁଏତ ରକ୍ତମାଂସର ପଣ୍ୟ । ବିଭିନ୍ନ କକ୍ଷରେ, ବିଭିନ୍ନ ବକ୍ଷରେ ରାତ୍ରି ଯାପନ କରି ଜୀବନର ପାଥେୟ ସଂଗ୍ରହ କରୁଛନ୍ତି । ରୂପ ଅଛି, ଏବେ ବି ଦେହର ମାଂସପେଶୀର ସୌନ୍ଦର୍ଯ୍ୟ ଖୁବ୍ ଆକର୍ଷଣୀୟ । ଦେଖିଲେ ଏ ପନ୍ଥା ହିଁ ସହଜସାଧ । ଏକଥା ନୁହେଁ ଯେ, ନିଜ ସଂସାର ପାତିବାପାଇଁ ସେ ଚାହିଁ ନ ଥିଲେ । ଚାହିଁଥିଲେ ବରଂ ଛୋଟ ଗୋଟିଏ ସଂସାର, ସାଧାରଣ ଗୋଟିଏ ମଣିଷ ଆପଣାର । ଚାହିଁଥିଲେ ମାମୁଲି ସାମର୍ଥ୍ୟ । ଶିକ୍ଷା ମଧ ଥିଲା । କେତେ ସାମାନ୍ୟ ଥିଲା ତାଙ୍କର ଏଇ ଦାବି । ଅଥଚ ସେତକ ମଧ ହୋଇପାରିଲା ନାହିଁ । ବିଭିନ୍ନ କାରଣରୁ ଆଜି ଆଉ ସେ ବିଚାରରେ ଲାଭ ନାହିଁ । ଯେଉଁ ରାସ୍ତାରେ ସେ ପଦକ୍ଷେପ କରିଛନ୍ତି, ତା'ର ଶେଷ ଦିଗ୍‌ବଳୟ ପର୍ଯ୍ୟନ୍ତ ଯାତ୍ରାହିଁ ତାଙ୍କର ଜୀବନ । କିନ୍ତୁ ତା' ବୋଲି ତୁମର କି ଅଧିକାର ଅଛି ତା'କୁ ଜଣାଇବ ଯେ, ସେ ଏଇଆ । ଯାହା ଜଣାଉଛ ହୋଇପାରେ ତା' ସତ୍ୟ । କିନ୍ତୁ ସତ୍ୟର ପ୍ରକାଶର ଅଧିକାର ତୁମକୁ ଦେଲା କିଏ ? କାଉଲ୍‌ଙ୍କ ଅବହେଳା, ଉଦାସୀନତା ପ୍ରତିପାଦନ କଲା ନୀରାଙ୍କ ଜୀବନର ହୀନତାକୁ ।

ନୀରା ନିଶ୍ଚଳ ମୂର୍ତ୍ତି ପରି ସେଠି ଛିଡ଼ା ହୋଇଥାନ୍ତି । କିଛିକ୍ଷଣ ବିତିଗଲା । କାଉଲ୍ ଲକ୍ଷ୍ୟ କଲେ ତାଙ୍କ ବହି ଉପରେ ଛାଇ । ମୁହଁ ଟେକି ଚାହିଁ ଦେଖିଲେ ନୀରା ସେହିପରି ଠିଆହୋଇ ରହିଛନ୍ତି ।

କହିଲେ, "ଡ୍ରାଇଭର ବର୍ତ୍ତମାନ ସୁଦ୍ଧା ଆସି ନଥିବ । ଟ୍ୟାକ୍ସି ଡକାଇବି । ଟିକିଏ ଅପେକ୍ଷା କର ।"

କିଛି ସମୟ ନୀରବ ରହିବା ପରେ ନୀରା କହିଲେ, "ତୁମର ନାମ ମୋତେ ଜଣାନାହିଁ । ତୁମର ଅତୀତ, ବର୍ତ୍ତମାନ ସହିତ ମୁଁ ପରିଚିତ ନୁହେଁ । ତଥାପି ତୁମର ଯେତିକି କାରଣ ଅଛି ମୋତେ ଘୃଣା କରିବାପାଇଁ, ମୋର ବି ସେତିକି କାରଣ ଅଛି ତୁମକୁ ହେୟ ମନେ କରିବାଲାଗି ।" ସାମାନ୍ୟ ଉତ୍ତେଜିତା ଥିଲେ ନୀରା । କାଉଲ୍ ଏପରି କଥା ଶୁଣିବାର ଆଶା କରି ନଥିଲେ । ଆଖିକୁ କୁଞ୍ଚିତ କରି ଚାହିଁଲେ ନୀରା ଆଡ଼କୁ । କହିଲେ, "ଘୃଣା ତ ମୁଁ କରିନାହିଁ ? କରିବାର କଥା ବି ନୁହେଁ । ଗତ ରାତ୍ରିରେ ମୋତେ ତ ସବୁ ପ୍ରକାର ସନ୍ତୋଷ ଦେଇଛ । ମୁଁ କୃତଘ୍ନ ନୁହେଁ । ସେଥିପାଇଁ ତୁମକୁ ତ ଯଥାସାଧ ଉପହାର ଦେଉଛି । କ'ଣ ଆହୁରି ଅଧିକ ଚାହଁ ? ହୁଏତ ପର୍ସରେ ଥିବ ।"

"ଥ୍ୟାଙ୍କ୍ ଇଉ । ସାମାନ୍ୟ ଟିକିଏ ଚେଷ୍ଟାକରି ବିଦାୟ ମୁହୂର୍ତ୍ତକୁ ସମ୍ମାନଜନକ କରିପାରନ୍ତ ! ଅନ୍ତତଃ କୃତଜ୍ଞତା ଦୃଷ୍ଟିରୁ ।"

"ତୁମର ନାମ କ'ଣ ?"

"ଅନାବଶ୍ୟକ । ରାତ୍ରିର ପାଥେୟ ।"

"ତୁମର ?" ନୀରା ପଚାରିଲେ ।

"କାଉଲ୍ । ରମେଶ କାଉଲ୍ । ଶୁଣ, ସେନ୍‌ସିଟିଭ୍‌ନେସ୍ ଅନ୍ୟାନ୍ୟ ବ୍ୟବସାୟ ପରି ତୁମର ଏ ବ୍ୟବସାୟର ମଧ ପ୍ରତିରୋଧକ ।"

"ତୁମର ନାମ କାଉଲ୍ ନ ହୋଇ ବ୍ରୁଟ୍ ହେବା ଉଚିତ ଥିଲା ।"

‘‘ବସ । ବିଛଣାରେ ନ ହେଲେ ବି ସେ ଚେୟାରଟା ଟାଣିଆଣ । ବ୍ରେକ୍‌ଫାଷ୍ଟ ଖାଇଯିବ । ମଗାଇବି ?’’

‘‘ଧନ୍ୟବାଦ । ମୋର ସମୟର ଅନେକ ଅଭାବ । ତା’ଛଡ଼ା ଆଜିକାର ଦିନପାଇଁ ମୋର ଅନ୍ୟ ଏନ୍‌ଗେଜ୍‌ମେଣ୍ଟ ଅଛି ।’’

‘‘ମୁଁ ଯଦି ତୁମରି ବ୍ୟବସାୟ କରିଥାନ୍ତି ମିସ୍ ! ତା’ହେଲେ ମୋ ପରି ଗୋଟାଏ କଷ୍ଟମରକୁ ହାତରେ ରଖିବା ପାଇଁ ଉପଯୁକ୍ତ ଆବହାଓ୍ୱା ସୃଷ୍ଟି କରୁଥାନ୍ତି ।’’

‘‘ତୁମେ ଅଭିଜ୍ଞ । ଗୋଟାଏ ଶରୀରକୁ ନେଇ ଆଉ ଗୋଟାଏ ରାତି ନଷ୍ଟ କରିବ ନାହିଁ ଜାଣେ । ତା’ଛଡ଼ା ମୋର ମଧ ଆଉ ଆଗ୍ରହ ରହିବ ନାହିଁ । କିଛି କୌତୂହଳ ନଥିଲେ ଏ ଭାର ବହନ କରିବା ଦୁଃସାଧ ।’’

‘‘ସ୍ୱୀକାର କରିବ, ମୋ’ ପରି ଅଭିଜ୍ଞ ଲୋକର ସାର୍ଟିଫିକେଟ୍‌ର ମୂଲ୍ୟ ଅଛି । ତୁମର ଶରୀର ଉପଭୋଗ୍ୟ । ବସି ରହିପାର, ମୁଁ ବାଥ୍‌ରୁମ୍‌ରୁ ପ୍ରସ୍ତୁତ ହୋଇ ଆସିବା ପର୍ଯ୍ୟନ୍ତ । ଅପେକ୍ଷା କରିପାର—ମୋ ସାଙ୍ଗରେ ବାହାରକୁ ଯିବା ପାଇଁ । ନିଜେ ତୁମକୁ ଛାଡ଼ିଦେଇ ଆସିପାରେ ତୁମର ଚାହିଁବା ମୁତାବକ ଠିକଣାରେ ।’’

‘‘ଆମ ଦଳର ଲୋକଙ୍କ ସଂକ୍ରାନ୍ତରେ ଯଥେଷ୍ଟ ଜ୍ଞାନ ଥିବ । ଜାଣିଥିବ ଆମେ ମଝିରେ ମଝିରେ ଚୋରି କରୁ—ପର୍ସ, ଓ୍ୱାଚ୍, ଟ୍ରାନ୍‌ଜିଷ୍ଟର । ଯଦି ମୁଁ ସେଇଆ କରି ଇତିମଧରେ ଏଠୁ ଚାଲିଯାଏ ? ତୁମେ ତ ମୋର ଠିକଣା ଜାଣ ନାହିଁ, ନାମ ବି ।’’

‘‘ବିଶ୍ୱାସ କର । ମୁଁ ପୁଲିସରେ ଖବର ଦେବି ନାହିଁ । ଅନ୍ତତଃ ନିଜ ସ୍ୱାର୍ଥ ଦୃଷ୍ଟିରୁ । ତା’ଛଡ଼ା କିଛି କ୍ଷତି ହେବା ଭଳି ମୋର ଅର୍ଥର ଅଭାବ ନାହିଁ ।

ଯାହା ଚାହଁ ମୋର ବିନା ଅନୁମତିରେ ନେଇ ଯାଇପାର—ଏ ଘରର ଯାହା କିଛି ମୂଲ୍ୟବାନ ।''

ଡ୍ରେସିଂ ଗାଉନ୍‌ରେ ନିଜର ଉଲଗ୍ନ ଦେହଟାକୁ ଆବୃତ୍ତ କରି ବାଥ୍‌ରୁମ୍ ଭିତରକୁ ପଶିଗଲେ କାଉଲ୍ ।

ରାତ୍ରିର ଆଲୋକ ସମ୍ପର୍କର ହୀନତାରେ କୋଠରିଟା କ୍ଷୁଦ୍ର ମନେ ହେଉଥିଲା । ବର୍ତ୍ତମାନ ଜଣାପଡ଼ିଲା—ଏଟା ବିସ୍ତୀର୍ଣ୍ଣ । ନୀରା ରେଡ଼ିଓଗ୍ରାମ୍‌ର ସୁଇଚ୍‌ଟା ଅନ୍ କରି ଶୁଣିଲେ ଖଣ୍ଡେ ଫରାସୀ ଗୀତର ରେକର୍ଡ଼ । ଗତ ରାତ୍ରିଠାରୁ ସଜାହୋଇ ରଖାହୋଇଥିଲା, ରେକର୍ଡ଼ପ୍ଲେୟାର ଉପରେ । ପାଖରେ ରାଇଟିଂ ଟେବୁଲ ଉପରେ ଅନେକ କିସମର ନୂଆ ବହି ସବୁ ଖୋଲାହୋଇ ପଡ଼ିଛି । ଟେବୁଲ ଡ୍ରୟାରଟାକୁ ଟାଣିଆଣି ଦେଖିଲେ, ସେଥିରେ ଅନେକ ନାରୀଙ୍କ ଫଟୋ । ଜାପାନୀ, ଆଙ୍ଗ୍ଲୋଇଣ୍ଡିୟାନ୍, ଦେଶୀ ନାରୀସବୁ ଅର୍ଦ୍ଧଉଲଗ୍ନ ଅବସ୍ଥାରେ । ଫଟୋ ପଛଆଡ଼େ ସେମାନଙ୍କର ସନ୍ତକ । ସେଥିରେ କିଛି କିଛି ଲେଖା ହୋଇଛି ସେମାନଙ୍କର ନିଜର ହସ୍ତାକ୍ଷରରେ ।

କବାଟରେ ଆଘାତ ହେଲା । ନୀରା ଦରଜା ଖୋଲିଲେ । ସୁସଜ୍ଜିତ ବେହେରା ଆସି ରୂପାର ଟ୍ରେ ଉପରେ ଖଣ୍ଡେ ଖବରକାଗଜ, ଖଣ୍ଡେ ମାଗାଜିନ, ଗୋଟିଏ ପଟ୍ ଚା ଓ ଦୁଇଟା କପ୍ ଥୋଇ ଦେଇଗଲା । ପଟ୍ ଓ କପ୍ ଉପରେ ଚୀନା ଡ୍ରାଗନ୍‌ର ଚିତ୍ର ଅଙ୍କା ହୋଇଛି । ଟ୍ରେର ଗୋଟାଏ କଣକୁ ଗୋଟାଏ ଗୋଲାପଫୁଲ । ବେହେରାର ମୁଣ୍ଡରେ ଧଳା ଟୋପି । ଉପରେ ନାଲି ରିବନ୍, ଅଣ୍ଟାରେ ନାଲି ଫିତା, ବକଲିସ୍ ଭିତରେ ବନ୍ଧା ହୋଇଛି । ଧଳା ବେକଚିପା କୋଟ୍ ଉପରେ ପିତଳର ବୋତାମ ସବୁ ଚିକ୍ ଚିକ୍ କରୁଥାଏ । ବେହେରା ସଲାମ ଦେଇ ପଚାରିଲା,–''ମେମ୍‌ସାହେବ ! ବ୍ରେକ୍‌ଫାଷ୍ଟ ?''

ନୀରା କହିଲେ,–''ସାହେବ ବାଥ୍‌ରୁମ୍‌ରୁ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବି ।''

ସଲାମ ଜଣାଇ ବେହେରା କୋଠରିରୁ ନିର୍ଗତ ହେଲା ।

କାଉଲ୍ ବାଥରୁମ୍‌ରୁ ଆସିଲେ ସୁସଜ୍ଜିତ ହୋଇ । କଳା ପ୍ୟାଣ୍ଟ୍, କଳା କୋଟ୍, ଛାତି ପକେଟରେ ଧଳା ସିଲ୍‌କ ରୁମାଲ, କଳା ଯୋତା, ଧଳା ଜାମା ଉପରେ ସୁନ୍ଦର ଏକ ଲଣ୍ଡନର ଟାଇ । ଟ୍ରେ ପାଖକୁ ଆସି ଗୋଲାପଫୁଲଟିକୁ କୋଟ୍‌ର ଉଦ୍ଦିଷ୍ଟ କଣାରେ ଖୋସିଲେ ।

ନୀରାଙ୍କ ଆଡ଼କୁ ମୁହଁ ବୁଲାଇ ପଚାରିଲେ,–"ବ୍ରେକ୍‌ଫାଷ୍ଟ ?"

ନୀରା କହିଲେ,–"ମୋର ଅଭ୍ୟାସ ନାହିଁ, ଏତେ ସକାଳୁ । ତୁମେ ଯଦି ଚାହଁ ମୁଁ ଅପେକ୍ଷା କରିବି ତୁମର ଖାଇବା ଶେଷ ପର୍ଯ୍ୟନ୍ତ ।"

ଉପହାସ ସ୍ୱରରେ କାଉଲ୍ କହିଲେ,–"ବିନା ଫିସ୍‌ରେ ଅପେକ୍ଷା କରିବ ?"

"ଅପେକ୍ଷା ପାଇଁ ଚାର୍ଯ କରୁନାହିଁ । ସେଇଟା ଜୀବନର ଅଙ୍ଗ । ସବୁବେଳେ ଆମକୁ ଅପେକ୍ଷା କରିବାପାଇଁ ପଡ଼େ ।" ଉତ୍ତରରେ କହିଲେ ମିସ୍ ନୀରା ।

"ତା' ହେଲେ ଚାଲ ।"

ଦୁହେଁ ବାହାରି ପଡ଼ିଲେ ତଳ ମହଲାକୁ । ଡ୍ରାଇଭର ଆସି ସାରିଲାଣି । ଗାଡ଼ିରେ ବସିଲେ ମିଷ୍ଟର କାଉଲ୍ ଓ ମିସ୍ ନୀରା । ସେତେବେଳକୁ ରବିବାରର ସୂର୍ଯ୍ୟ କଲିକତା ସଡ଼କକୁ ଉଜ୍ଜ୍ୱଳ କରୁଥାଏ । ପ୍ରଥମେ ନୀରା ପଚାରିଲେ,–"କୁଆଡ଼େ ବର୍ତ୍ତମାନ ଯିବ ?"

"ଚର୍ଚ୍ଚକୁ ।"

"ତୁମେ କ'ଣ ଖ୍ରୀଷ୍ଟିଆନ୍ ?"

"ବୋଧହୁଏ ନୁହେଁ । ତେବେ ପିଲାଦିନରୁ ମିସନେରୀ ସ୍କୁଲରେ ପଢ଼ିଛି । ଚର୍ଚ୍ଚର ମିଉଜିକ୍ ଖୁବ୍ ଭଲଲାଗେ । ବିଶେଷତଃ ରବିବାର ସକାଳର । ଶାନ୍ତ ଗମ୍ଭୀର ପିଆନୋ ମିଉଜିକ୍ । ଶୁଣ, ତୁମର ଯିବାର ସ୍ଥାନ ମୋତେ ଦେଖାଇବା ପାଇଁ ଯଦି ଲଜ୍ଜିତ ହେଉଥାଅ, ତା'ହେଲେ ମୋତେ ପ୍ରଥମରେ ଚର୍ଚ୍ଚରେ ଛାଡ଼ିଦେଇ ଏ ଗାଡ଼ି ତୁମକୁ ନେଇଯିବ ତୁମର ନିର୍ଦ୍ଦେଶ ମୁତାବକ ।"

ନୀରା ସାମାନ୍ୟ କ୍ଷୁବ୍‌ଧା ହୋଇ କହିଲେ,–"ଅନାୟାସରେ କଠିଣ କଥା କହିବାର ଦକ୍ଷତା ଖୁବ୍ ଅଛି, ସ୍ୱୀକାର କରୁଛି ।" ବାକ୍ୟ ପୂରଣ ହେଉ ହେଉ କାଉଲ୍ କହିଲେ,–"ଆଉ ମଧ ସ୍ୱୀକାର କରିବ ଯେ, ମୁଁ ଲଜିକାଲ୍ । କିଛି ଅବାନ୍ତରର ପ୍ରଶ୍ରୟ ଦିଏ ନାହିଁ—କଥାରେ ବା କାର୍ଯ୍ୟରେ ।"

"ତୁମେ ଜାଣିଥିବ ବୋଧହୁଏ, କୌଣସି ବିଚକ୍ଷଣ ଲୋକକୁ ଇଚ୍ଛାମତେ ପରିଚାଳନା କରିବାପାଇଁ ଯେ କୌଣସି ନାରୀ ପକ୍ଷରେ ସମ୍ଭବ । କିନ୍ତୁ ନିର୍ବୋଧ ବ୍ୟକ୍ତିକୁ ନିୟନ୍ତ୍ରଣ କରିବାପାଇଁ ବିଚକ୍ଷଣ ନାରୀ ବି ଅସମର୍ଥ । ଆଉ ତୁମେ ବିଚକ୍ଷଣ, ସେତିକି ଯାହା ସାନ୍ତ୍ୱନା ।"

ନୀରା ଅନାଇଲେ କାଉଲ୍‌ଙ୍କ ଆଡ଼କୁ । କାଉଲ୍ ଉପଭୋଗ କଲେ ନୀରାଙ୍କ ବୁଦ୍ଧିମତ୍ତା ।

କଲିକତା ସହରଟି ରବିବାରର ସକାଳେ ଗୋଟିଏ ସଦ୍ୟଜାଗ୍ରତ ଶିଶୁପରି ମନେହୁଏ । କୋମଳ, ନିର୍ବିକାର ।

ଚର୍ଚ୍ଚ ସାମନାରେ ଗାଡ଼ି ପହଞ୍ଚିଲା । ଡ୍ରାଇଭର ଗାଡିର ଦରଜା ଖୋଲିଦେଲା ନୀରାଙ୍କ ପଟୁ । ନୀରା ଗାଡ଼ିରୁ ଓହ୍ଲାଇଲେ । ଆରକଡ଼ରୁ ଓହ୍ଲାଇଲେ କାଉଲ୍ । ନୀରା ପାଖକୁ ଯାଇ ବିଦାୟର ଭୂମିକା ଆରମ୍ଭ କଲେ । ନୀରା କାଉଲ୍‌ଙ୍କୁ ଅନ୍ୟକିଛି କହିବାର କୌଣସି ସୁଯୋଗ ନ ଦେଇ ପଚାରିଲେ,–" ଏହା

ଭିତରକୁ ମୁଁ ଯାଇପାରିବି ? ପରିଚିତ ଲୋକଙ୍କ ପାଖରେ ତୁମେ ଅପମାନିତ ହେବନାହିଁ ତ ?''

''ନା । ଯେ ମୋତେ ଜାଣେ, ମୋର ସମୁଦାୟ ରୂପକୁ ଚିହ୍ନେ । କାହା ପାଖରେ କୌଣସି କାର୍ଯ୍ୟପାଇଁ କିଛି କୈଫିୟତ ଦେବାକୁ ନାହିଁ, ମୋ ଜୀବନରେ । ତା' ଛଡା ମୁଁ ତ କିଛି ଅନ୍ୟାୟ କରିନାହିଁ ! କାହା ଇଚ୍ଛା ବିରୁଦ୍ଧରେ କିଛି କରିନାହିଁ ! ମୁଁ ଉପଭୋଗ କରିଛି ! ତୁମେ ଜୀବିକା କରିଛ । କ୍ୟୁଇଟସ୍ ।''

''ସ୍ୱୀକାର କରୁଛି ତୁମେ ଲଜିକାଲ୍ ।''

''ତୁମର ଶିକ୍ଷା କଅଣ ?''

''ତୁମପରି ଲୋକଙ୍କର ଭାଷା ବୁଝିବାପାଇଁ ଯଥେଷ୍ଟ ।''

''ଭିତରକୁ ଆସ''— ନିର୍ଦ୍ଦେଶ ଦେଲେ କାଉଲ୍ ।

ସେତେବେଳକୁ ଚର୍ଚ୍ଚର ସର୍ଭିସ୍ ଆରମ୍ଭ ହୋଇଗଲାଣି । ପଛପାଖରେ ବେଞ୍ଚରେ ଦୁଇଜଣ ବସିଲେ । ଫାଦର୍ ସରମନ୍ ଦେଲେ । ଶେଷରେ ସମସ୍ତେ କହିଲେ,—''ଆମେନ୍ ।'' ମୁଣ୍ଡ ନତକରି ପ୍ରଣାମ ଜଣାଇଲେ ଅନ୍ୟ ସମସ୍ତେ— କାଉଲ୍ ଓ ନୀରାଙ୍କ ବ୍ୟତୀତ । ଚର୍ଚ୍ଚ ତରଫରୁ ଚାନ୍ଦା ମଗାହେଲା । କାଉଲ୍ ପଚାଶଟି ଟଙ୍କା ଦେଲେ ।

ବଡ଼ ବଡ଼ ଖିଲାଣ, କାନ୍ଥର ଚାରିକଡ଼ରେ ବାଇବେଲରେ ବର୍ଣ୍ଣିତ ବିଷୟବସ୍ତୁର ଚିତ୍ରଣ, ଯୀଶୁଙ୍କର କ୍ରୁଶବିଦ୍ଧ ଶରୀର, ପାଦ୍ରୀଙ୍କ ଭାଷା, ସମବେତ ଜନତାର ନିବେଦନ ନୀରାଙ୍କ ମନ ଉପରେ ଗୋଟିଏ କୋମଳ ପ୍ରଲେପ ଦେଉଥାଏ । ସଚେତନ ଭାବରେ କୌଣସି ମନ୍ଦିର, ଚର୍ଚ୍ଚ, ମସଜିଦ୍ ଯିବା ଅନେକବର୍ଷ ଭିତରେ ଏହି ବୋଧହୁଏ ତାଙ୍କର ପ୍ରଥମ । ଭାବିଲେ, ଯିଏ ଯାହା କରୁଛନ୍ତି

ସେଥିପାଇଁ କ'ଣ କ୍ଷମା ଚାହିଁବେ ଯୀଶୁଙ୍କ ପାଖରୁ. ଏ ପାଦ୍ରୀ ଜରିଆରେ ? କିଛି ଠିକ୍ କରିପାରିଲେ ନାହିଁ । ସମୟ ମଧ୍ୟ ଅଳ୍ପ । କୌଣସି ସିଦ୍ଧାନ୍ତ ନେବା ଏ ପରିସ୍ଥିତିରେ ସମ୍ଭବ ନୁହେଁ ।

ଚର୍ଚ୍ଚରୁ ବାହାରି ଗାଡ଼ିରେ ପୁଣି ବସିଲେ ଦୁଇଜଣ ।

''ତୁମେ କ'ଣ ପ୍ରତ୍ୟେକ ରବିବାର ଦିନ ଚର୍ଚ୍ଚ ଆସ ?''

''ନା ! ଯେଉଁଦିନ ଅନ୍ୟ କୌଣସି ଏନ୍‌ଗେଜ୍‌ମେଣ୍ଟ ନଥାଏ, ଆଜିପରି ।''

ଗାଡ଼ିକୁ ନିର୍ଦ୍ଦେଶ ଦେଲେ ନୀରା— ତାଙ୍କ ଘର ଠିକଣାରେ । କାଉଲ୍ ନୀରାଙ୍କୁ ଚାହିଁ କହିଲେ, –''ତା' ହେଲେ ତୁମର ଏଇ ସାହସକୁ ଯୀଶୁଙ୍କ ଦାନ ବୋଲି ମନେକରିବା ପାଇଁ ହେବ ।''

''ଲଜ୍ଜା ବେଶ୍ୟାର ଅଳଙ୍କାର ନୁହେଁ । ତଥାପି ମାମୁଲି ସମୟ ପାଇଁ ହେଲେ ମଧ୍ୟ ସେ ସମ୍ମାନ ଚାହେଁ । ପବିତ୍ର ନ ହେଲେ ମଧ୍ୟ ଗୁପ୍ତ ନାରୀତ୍ୱର ସମର୍ପଣର ପ୍ରତିଦାନ । ପୃଥିବୀର ସମସ୍ତ ଖଣିଜର ସମସ୍ତ ସୁନା ମଧ୍ୟ ତା'ର ଯଥେଷ୍ଟ କ୍ଷତିପୂରକ ନୁହେଁ ।''

ନୀରାଙ୍କୁ ପଚାରିଲେ, –''ବର୍ତ୍ତମାନ ଏ ପ୍ରଭାତରେ ଯଦି ଗଙ୍ଗାକୂଳକୁ ବୁଲିଯାଉଁ ତାହାହେଲେ ତୁମର ଆପତ୍ତି ଅଛି ?''

ନୀରା କହିଲା, –''ମୋତେ ଘରେ ପହଞ୍ଚାଇ ଦେବାର ପ୍ରତିଶ୍ରୁତି ଦେଲେ ଅବଶ୍ୟ ଆପତ୍ତି ନାହିଁ ।''

କାଉଲ୍ ହସି ହସି ତଥାସ୍ତୁ ଜଣାଇଲେ ।

ଗାଡ଼ି ଗଙ୍ଗାନଦୀ କୂଳକୁ ଚାଲିଲା ।

"ତୁମେ କେବେ ପ୍ରେମ କରିଛ ମିସ୍ ନୀରା ?"

"ପ୍ରେମର ଆକ୍ଷରିକ ତର୍ଜମା ଜାଣେନା । ତେବେ ଆମେ ସବୁବେଳେ ପ୍ରେମ କରୁ—ଅନ୍ତତଃ ପ୍ରେମ କରିବାର ଛଳନା କରୁ । କେବଳ ପ୍ରେମିକ ଭିନ୍ନ । ପରିସର ଭିନ୍ନ । ସମୟ ଭିନ୍ନ । କିନ୍ତୁ ପ୍ରେମ ଆମର ଅବିଚଳିତ ।" —ଛଳନା ସ୍ୱରରେ ଉତ୍ତର ଦେଲେ ନୀରା ।

ଝରକା କାଚରୁ ବାହାର ରାସ୍ତାକୁ ଅନାଇଥାନ୍ତି କାଉଲ୍ । କିଛି ସମୟ ଚିନ୍ତା କଲାପରେ ଅନେଇ ରହିଲେ ସିକ୍ତ ଆକାଶକୁ, ଗଙ୍ଗାର ଶାନ୍ତ ଧାରାକୁ ।

"ନୀରା ତୁମର ଅନେକ ଗର୍ବର ସାମଗ୍ରୀ ଅଛି ଇତିହାସରେ । ଯୀଶୁ, ବୁଦ୍ଧଙ୍କ କଥା ଶୁଣିଛ ?"

"ନାମ ଶୁଣିଛି ମାତ୍ର"—ନୀରା ଜଣାଇଲେ ।

"ଜାଣିଛ ଯୀଶୁଙ୍କ ପାଖରେ ମାଡ଼ିଲୋନାଙ୍କୁ ? ସେ ମଧ ଗଣିକା ଥିଲେ । ଯୀଶୁ ତାଙ୍କୁ ଗ୍ରହଣ କରିଥିଲେ । ତାଙ୍କରି ନାମରେ ଧର୍ମମନ୍ଦିର ସୃଷ୍ଟି ହୋଇଛି ।"

" ପୁଣି ଅମ୍ବାପଲୀଙ୍କୁ ଜାଣିଛ ? ଯାହାପାଇଁ ଦିନେ ବୁଦ୍ଧ କାଳେ ମୃତ୍ୟୁବରଣ କରିଥିଲେ । ଅବଜ୍ଞା କଲେ ରାଜାଙ୍କ ନିମନ୍ତ୍ରଣ, କିନ୍ତୁ ଗ୍ରହଣ କରିଥିଲେ ଅମ୍ବାପଲୀଙ୍କ ପ୍ରାସାଦରେ ଆତିଥ୍ୟ । ଭକ୍ଷଣ କରିଥିଲେ ମାଂସ ।"

ନୀରା ଅନାଇ ରହିଲେ କାଉଲ୍‌ଙ୍କ ମୁହଁକୁ ।

"ମୁଁ ଯଦି ଯୀଶୁ ବା ବୁଦ୍ଧ ହୋଇଥାନ୍ତି, ତାହାହେଲେ ତୁମକୁ ସଦ୍ୟ ମୁକ୍ତି ଦିଅନ୍ତି ।"

"ତୁମେ ରାମଚନ୍ଦ୍ର ନୁହଁ କିମ୍ବା ମୁଁ ମଧ୍ୟ ଅହଲ୍ୟା ନୁହେଁ । ତୁମେ ମୁକ୍ତି ଦେଇ ପାରିବ ନାହିଁ କିମ୍ବା ମୁଁ ମଧ୍ୟ ମୁକ୍ତି ଚାହେଁ ନାହିଁ । କାଉଲ୍ ସାହେବ ! ମୁଁ ଅଭିଶପ୍ତା ନୁହେଁ, ବ୍ୟବସାୟୀ ।

ମାଟ୍ରିକ୍ ପାଶ୍ କରୁ କରୁ ଜୀବନକୁ ମୁକାବିଲା କଲି । ସାମନାସାମନି ହେଲେ ରୁଗ୍ଣ ମାତା, ବୃଦ୍ଧ ପିତା, ସଂସାରର ଦାୟିତ୍ୱ । କଲିକତାର ନିଃସ୍ୱ ଦରିଦ୍ର ଜୀବନ । ଏ ବୋଝକୁ ଜୀବନସଡ଼କରେ ବୋହିବାପାଇଁ କାହାର ସାହାଯ୍ୟ ପାଇଲି ନାହିଁ, ସମାଜର ଚାରି ଚଉହଦି ଭିତରେ । ସ୍କୁଲର ସାର୍ଟିଫିକେଟ ନେଇ ବାହାରିଲି ଲଢ଼ିବାପାଇଁ, ଦୁଃଖ ଅଭାବର ଦୈତ୍ୟ ସହିତ । ହେଲି ଟାଇପିଷ୍ଟ, ହେଲି ଶିକ୍ଷୟିତ୍ରୀ, ହେଲି ସେଲ୍ସ ଗାର୍ଲ୍ । ଟାଇପିଷ୍ଟର ରୋଜଗାର ମାମୁଲି ଥିଲା । କିନ୍ତୁ ଅନେକ ଉପହାର ଦେଲେ, ଅନେକ ଇଙ୍ଗିତ ଦେଲେ ମୋତେ ରାଠୋର ସାହେବଙ୍କ ପରି । ଦିନେ ମୋ ହାତ ଧରି ପକାଇ କହିଲେ , ଏ କୋମଳ ଅଙ୍ଗୁଳିର ପ୍ରହାର ପାଇ ଟାଇପ୍ ମେସିନ୍‌ଟି ଧନ୍ୟ ହୋଇଛି । ମୋ ପାପୁଲିକୁ ତାଙ୍କ ଗାଲ ଉପରେ ଚାପି ଧରିଲେ । ଆଉ ହାତରେ ସତ୍‌କାର କଲି ତାଙ୍କର ଆର ଗାଲଟିକୁ, ଗୋଟିଏ ଚପେଟାଘାତ ଜରିଆରେ ।

ବିଦାୟ ନେଲି ସେଠୁ । ହେଲି ଶିକ୍ଷୟିତ୍ରୀ— ଗୋଟାଏ ଛୋଟ ସହରର ସ୍କୁଲରେ । ସେଠାରେ ମ୍ୟାନେଜିଂ କମିଟିର ସଭାପତି ମୋତେ ଚାହିଁଲେ ତାଙ୍କର ମାତୃହୀନ ପୁତ୍ରଙ୍କର ପ୍ରାଇଭେଟ୍ ଟ୍ୟୁସନ୍ ପାଇଁ । ଦିନେ ରାତିରେ ପୁତ୍ର ପରିବର୍ତ୍ତେ ଦେଖେ ସ୍ୱୟଂ ପିତାଙ୍କୁ । ଦରଜା କବାଟ ବନ୍ଦ କରିଦେଇ ଆରମ୍ଭ କଲେ ମୋର ଶରୀର ଉପରେ ଆକ୍ରମଣ । ମୁଁ ପ୍ରତିରୋଧ ଜଣାଇଲି । କ୍ଷତ-ବିକ୍ଷତ ହେଲେ ପିତୃଦେବ । କ୍ଷତ-ବିକ୍ଷତ ହେଲି ମୁଁ ।

ଶେଷକୁ ଆସିଲି ସେ କେମିଷ୍ଟ୍ ଦୋକାନକୁ ସେଲ୍ସ ଗାର୍ଲ ହୋଇ । ଆସିଲେ କଷ୍ଟମର୍‌ମାନେ, ଆସିଲେ ଦୋକାନ ମାଲିକଙ୍କ ଉଚ୍ଛୃଙ୍ଖଳ ପୁତ୍ରଗଣ ଓ ତାଙ୍କର ସହୋଦରମାନେ । ନେଲେ କ୍ଲବ୍‌କୁ, ନେଲେ ଘୋଡ଼ାଦୌଡ଼କୁ,

ନେଲେ ବଡ଼ ବଡ଼ ହୋଟେଲକୁ । କାଉଲ୍ ସାହେବ ! ସେତେବେଳ ପର୍ଯ୍ୟନ୍ତ ମୋର ସତୀତ୍ୱ ଥାଏ ଅକ୍ଷତ । ସେମାନଙ୍କର ସମସ୍ତ ଉପହାର ଗ୍ରହଣ କରେ; କିନ୍ତୁ ସେମାନଙ୍କର କ୍ଷୁଧା ରହେ ଅନିର୍ବାପିତ । ମୋତେ ଚାହିଁଲେ ଅନେକ । ଚାହିଁଲେ ସମ୍ପୂର୍ଣ୍ଣ ଶରୀର । ଅସ୍ୱୀକାର କଲି । କ୍ରୁଦ୍ଧ ହେଲେ ଏ ଜନତା । ମାଲିକଙ୍କ ପାଖରେ କହିଲେ ମୋର ଉପସ୍ଥିତି ଏ ଦୋକାନର ପ୍ରତିଷ୍ଠାରେ ଅନ୍ତରାୟ ହେଉଛି । ଅବଶେଷରେ ସେଠାରୁ ମଧ୍ୟ ବିଦାୟ ନେବାକୁ ହେଲା ।

ବୁଝିଲି ମୋର ଗୋଟାଏ ମାତ୍ର ପଦାର୍ଥ ଅଛି, ଯାହା ଜରିଆରେ ଜୀବନକୁ ସୁସ୍ଥ, ସୁଖମୟ କରିପାରେ । ଏ ସମସ୍ତ ଜଗତ ମୋଠାରୁ କେବଳ ଗୋଟାଏ ଜିନିଷ ଚାହୁଁଛି । ତା'ପରେ ମୋର ଜୀବନ ଗୋଲାପଫୁଲର ତକ୍ତପୋଷ ପରି କୋମଳ ଓ ସୁଗନ୍ଧମୟ ହୋଇଉଠିବ । ସେ ହେଉଛି ମୋର ଶରୀରର ବିନିମୟ ।''

କାଉଲ୍ ସାହେବ କହିଲେ, ''ଖୁବ୍ ଇଣ୍ଟ୍ରେଷ୍ଟିଂ ।''

ନୀରା କହି ଚାଲିଲେ— ''ଦିନେ ପାର୍କଷ୍ଟ୍ରିଟ୍‌ର ସେ ଜର୍ମାନୀ ଏୟାର ସର୍ଭିସ୍‌ର ଅଫିସ୍ ସାମନାରେ ଛିଡ଼ା ହୋଇଯାଇଛି । ଦେଖୁଥାଏ ସେ ଚିତ୍ରସବୁ । କେତେ ଦେଶର କେତେ ଚିତ୍ର । ସେଠାକାର ଲୋକଙ୍କର କେଡ଼େ ସୁନ୍ଦର ଡ୍ରେସ୍ ! ନିଉ ମାର୍କେଟ ଯାଉଥାଏ । ସତ କହୁଛି କାଉଲ୍ ସାହେବ, ସେ ମାସସାରା ଆମେ ପ୍ରାୟ ଉପାସ । ମା' ମୃତ୍ୟୁ ଶଯ୍ୟାରେ । କିଛି ଭରସା ନଥାଏ । ଯେତେ ଋଣ କରିବାର କଥା ସବୁ ସରିଲାଣି । ଆଉ ସାଙ୍ଗସାଥୀଙ୍କ ମୁହଁ ଚାହିଁ ହେଉନାହିଁ । ମା'ର ପଥ୍ୟ ଦରକାର । ଡାକ୍ତର ଦରକାର । ଔଷଧ ଦରକାର । ତାକୁ ଏ ଅକାଳମୃତ୍ୟୁରୁ ବଞ୍ଚାଇବାକୁ ପଡ଼ିବ ।''

ଟିକିଏ ନିଃଶ୍ୱାସ ମାରିଲେ ନୀରା । ପୁଣି ଆରମ୍ଭ କଲେ—

''ସନ୍ଧ୍ୟା ରତରତ । ଜଣେ ଭଦ୍ରଲୋକ ଅଫିସରୁ ଫେରିଆସୁଥାନ୍ତି ଏକାକୀ । କିଛି ସମୟ ପାଇଁ ମୋତେ ଲକ୍ଷ୍ୟକଲେ । ମନେହେଲା ବିଦେଶରୁ ଫେରୁଛନ୍ତି । ବୟେ ଆଡ଼ର ଲୋକ । ଆସ୍ତେ ଆସ୍ତେ ମୋ ଆଡ଼କୁ ଆସିଲେ । କହିଲେ— ''ହାଲୋ !''

ମୁଁ ମଧ୍ୟ ମଜାରେ ଜବାବ ଦେଲି, ''ହାଲୋ !''

କହିଲେ, ''କଲିକତାରେ ମୁଁ ଏକାବେଳେକେ ନୂଆ, ମତେ ମୋ ହୋଟେଲରେ ପହଞ୍ଚାଇ ଦେବାରେ ସାହାଯ୍ୟ କରିବେ କି ?''

କହିଲି, ''ସମୟ ମୋର ନଷ୍ଟ ହେବ; ପାରିଶ୍ରମିକ ଦେଲେ ଯିବି ।''

''କେତେ ?''

''ଆପଣଙ୍କ କ୍ଷମତା ଅନୁସାରେ ।''

ଅଭିମାନକୁ ତାଙ୍କର ବାଧିଲା । କହିଲେ, ''ରାତ୍ରି ଶେଷପର୍ଯ୍ୟନ୍ତ ରହିଲେ ଦୁଇଶହ ଟଙ୍କା ଦେବି ।''

ଛାତିରେ ମୋ ଚାଉଁକରି ଲାଗିଲା । ଦାରିଦ୍ର୍ୟ ଓ ପ୍ରତିଷ୍ଠା ମଧ୍ୟରେ ପରଦାଟା ଏତେ ପତଳା ! ସେତେବେଳ ପର୍ଯ୍ୟନ୍ତ ଜୀବନରେ ଦୁଇଶହ ଟଙ୍କା ଏକାବେଳେକେ ଦେଖି ନଥାଏ । ଅଭାବ ମଧ୍ୟ ଉତ୍କଟ ଆକାର ଧାରଣ କରିଥିଲା ଶ୍ରାବଣର କଳାମେଘ ପରି । ସନ୍ଧ୍ୟାକୁ ଯେତେବେଳେ ଘରେ ପ୍ରତିଦିନ ପହଞ୍ଚେ, ମା' କାକୁତିପୂର୍ଣ୍ଣ ଦୃଷ୍ଟିରେ ଅନାଏ —ପଥ୍ୟ, ଫଳ ଓ ଔଷଧ ପାଇଁ । ଆଖି ଆଗରେ ନାଚିଗଲା ସେଇ ଦୁଃସ୍ଥ ଦୃଷ୍ଟି । ଆଉ କିଛି ଚିନ୍ତା କରି ପାରିଲି ନାହିଁ । ହଁ ଭରିଲି ।

ଭଦ୍ରଲୋକଙ୍କ ସହିତ ଗଲି । ବାଟରୁ ଦୋକାନକୁ ନେଇଗଲେ । କିଣିଲେ ଶାଢ଼ୀ, କିଣିଲେ ପ୍ରସାଧନର ସାମଗ୍ରୀ, କିଣିଲେ ପରଫିଉମ୍ । ହୋଟେଲରେ

ପହଞ୍ଚି କହିଲେ, "ପିନ୍ଧ ।" ସାହାଯ୍ୟ କଲେ ସାଜସଜ୍ଜାରେ । ହୋଟେଲର ବଡ଼ ବଡ଼ ଆରସି । ମୁଣ୍ଡରୁ ପାଦ ପର୍ଯ୍ୟନ୍ତ ପରିଷ୍କାର ଦିଶୁଥାଏ । ସେ ନେଳିଆ ଆଲୋକରେ ମୋର ରୂପ ଯେତେବେଳେ ଦେଖିଲି, ସତରେ କାଉଲ୍ ସାହେବ, ଆଶ୍ଚର୍ଯ୍ୟ ହୋଇଗଲି ନିଜେ । ମୁଣ୍ଡରେ କେଶସଜ୍ଜା, ଆଖିରେ ରଙ୍ଗ, ଓଠରେ ଲିପ୍‌ଷ୍ଟିକ୍, ଉନ୍ନତ ଛାତି, ଲଙ୍ଗଳା କଟି, ସେ ଶାଢ଼ୀରେ ଆବୃତ ଶରୀରରେ ମୁଁ ନୂଆ ମଣିଷ ପରି ଦେଖାଗଲି । ମୋର ଘରେ ନାଁ ଥିଲା ନିର୍ମଳା ।

ପ୍ରୌଢ଼ ଜଣକ ମୋତେ ପଚାରିଲେ ଇଂରାଜୀରେ, "ତୁମର ନାମ କ'ଣ ?" ମୁଁ ତାଙ୍କରି ଢ଼ଙ୍ଗରେ ସେହିପରି ଓଠ ଚିପି ଚିପି ଇଂରେଜୀରେ ଉତ୍ତର ଦେଲି, "ମୋ ନାଁ ମିସ୍ ନୀରା ।"

ସେହି ମୁହୂର୍ତ୍ତରେ ନିର୍ମଳାର ମୃତ୍ୟୁ ହେଲା । ଜନ୍ମ ନେଲା ମିସ୍ ନୀରା । ମୁଁ ଚାହୁଁଥାଏ ମୋର ପ୍ରତିବିମ୍ବକୁ ସେ ବଡ଼ ଆରସିଟାରେ । ରୂପ ସହିତ ନାମଟା ଯୁକ୍ତିଯୁକ୍ତ ହେଉଛି କି ନାହିଁ । ମନେ ମନେ ସନ୍ତୁଷ୍ଟ ହେଲି । ସନ୍ତୁଷ୍ଟ ହେଲେ ସେ ମହାଶୟ ।

ପଛରେ ଛିଡ଼ା ହୋଇଥିଲେ । ହଠାତ୍ ପଛଆଡୁ ମୋ ଦେହକୁ ଗୁଡ଼ାଇ ଧରିଲେ ଗୋଟାଏ ହାତରେ । ଆରହାତରେ ମୋ ମୁହଁଟାକୁ ପଛକୁ ଠେଲିଆଣି ଚୁମ୍ବନ ଦେଲେ । ପ୍ରଥମେ ପ୍ରତିବାଦ କଲି । ନିର୍ମଳା ଉତ୍‌କ୍ଷିପ୍ତ ହେଲା, ବାଧା ଦେଲା । ପରମୁହୂର୍ତ୍ତରେ ସହ୍ୟ କଲା ମିସ୍ ନୀରା । ସେ ବାହୁବନ୍ଧନକୁ ସ୍ୱୀକାର କଲି । ତଥାପି ସତୀତ୍ୱ ଥାଏ ଅକ୍ଷତ । ମନେ ମନେ ଯନ୍ତ୍ରଣା ପାଇଲି । ଭାବିଲି ପାପ, ଏଇଟା କଳଙ୍କ ନାରୀ ପକ୍ଷରେ ।

ସେ ସନ୍ଧ୍ୟା । ରାତି ଦଶଟା ପରେ... ଦେଖିଲି ଅନେକ ଭଦ୍ରଲୋକ, ଭଦ୍ର ମହିଳା ପହଞ୍ଚିଲେ ସେ ହୋଟେଲରେ । ଏ ମହାଶୟ ହେଉଛନ୍ତି ଦିଲ୍ଲୀର ଜଣେ ମସ୍ତ ବ୍ୟବସାୟୀ । ତାଙ୍କ ସହିତ ରାତ୍ରିଭୋଜନ୍ ପାଇଁ ଆସିଛନ୍ତି ଅନ୍ୟାନ୍ୟ ସମ୍ଭ୍ରାନ୍ତ ବ୍ୟକ୍ତିଗଣ ।

ସିଗ୍‌ନାଲ ପୋଷ୍ଟ ପାଖରେ ମଟରଟା ବନ୍ଦ ହୋଇଗଲା । ମିସ୍ ନୀରା ଚୁପ୍ ରହିଲେ । କାଉଲ୍ ଅନାଇଥାନ୍ତି ତାଙ୍କ ମୁହଁକୁ । ହାତଟି ପଡ଼ିଥାଏ କାଉଲ୍‌ଙ୍କ ବାହୁ ଉପରେ । ଗମ୍ଭୀର ହୋଇଗଲେ ନୀରା । ଆଉ କିଛି କହୁ ନାହାନ୍ତି ।

ସୂତାର ଖିଅ ଯୋଡ଼ି କାଉଲ୍ ପଚାରିଲେ, ''କହୁଥିଲ ସେ ରାତିରେ ଡିନାର୍ କଥା । ଅନେକ ଲୋକ ଆସିଥାନ୍ତି ନା !''

''ପ୍ରତ୍ୟେକ ଗଣିକାର ଏହି ପ୍ରକାର ଗଳ୍ପସବୁ ଥିବ । ଅନେକ ଶୁଣିଥିବ । 'ବୋରିଂ' ଲାଗିବ ତୁମକୁ ।'' —କହିଲେ ମିସ୍ ନୀରା ।

''ନୀରା ! ପ୍ରତ୍ୟେକ ଲୋକଙ୍କ ଜୀବନ ଗଳ୍ପର ସାମଗ୍ରୀ, କିନ୍ତୁ ତୁମ ଜୀବନର କଥା ଟିକେ ଅଧିକ ରୋମାଞ୍ଚକର । ତା'ଛଡ଼ା ତୁମ ବର୍ଣ୍ଣନାଟି ଆହୁରି ସୁନ୍ଦର ହେଉଛି । କୁହ ଶୁଣିବା ।''

ନୀରା କହିଲେ—''ଅତୀତକୁ ଆଉଡ଼େଇବାରେ ଅନେକ ସମୟରେ ଅନୁତାପ ଆସେ । ତଥାପି ସେ ଯନ୍ତ୍ରଣାଟି ସ୍ୱାଦୁକର ।''

କାଉଲ୍ କହିଲେ, ''ଓଟ ଯେମିତି କଣ୍ଟା ଖାଏ; ତା' ଓଠରୁ ଜିଭରୁ ରକ୍ତ ବାହାରେ, ତଥାପି ତାକୁ ସେ ଉପଭୋଗ କରେ । ଆହୁରି ବେଶି ବେଶି ଖାଏ । ତୁମର ଏ ଯନ୍ତ୍ରଣା ହୁଏତ ସେଇ ଧରଣର ।''

କାଉଲ୍ ଚିପି ଧରିଲେ ନୀରାଙ୍କ ପାପୁଲିକୁ ନିଜର କୋଳ ଭିତରେ । ଝୁଙ୍କି ଆସିଲେ ନୀରା କାଉଲ୍‌ଙ୍କ ଆଡ଼କୁ ମଟର ଭିତରେ । ହଠାତ୍ ଗୋଟାଏ ବ୍ରେକ୍ ଦେଲା ଡ୍ରାଇଭର ।

ନୀରା କହିଲେ, ''ମୁଁ ଯେତେବେଳେ ଗାର୍ଲସ୍କୁଲରେ ପଢୁଥାଏ ଆମ ସାମନା ଘରେ ଥାଆନ୍ତି ମିଷ୍ଟର ବୋଷ । ତାଙ୍କର ଗୋଟିଏ ବୋଲି ପୁଅ । ଗୋଟାଏ ସାହେବ ସ୍କୁଲରେ ପଢ଼େ । ମୋର ମା' ମଝିରେ ମଝିରେ ଯାଏ ତାଙ୍କ

ଘରକୁ ବୋଧହୁଏ କିଛି କିଛି ଆର୍ଥିକ ସାହାଯ୍ୟ ପାଇଁ । ପରେ ଶୁଣିଲି ସେମାନେ ମୋର ପାଠପଢ଼ା ଖର୍ଚ୍ଚ ମଧ୍ୟ ଦେଉଥିଲେ । ତାଙ୍କର ଘର ଚଟାଣ ସବୁ ମାର୍ବଲ ପଥରରେ । ଘର ସାମନାରେ ଗୋଟାଏ ବଡ଼ ଉଲଗ୍ନ ସ୍ତ୍ରୀର ମୂର୍ତ୍ତି ଅଛି । ସେଇଟା କାଳେ ଆଣିଥିଲେ ବିଲାତରୁ । ମଝିରେ ମଝିରେ ତାଙ୍କ ସ୍ତ୍ରୀ ମତେ କହନ୍ତି—'ତୋ ପାଠ ସରିଲେ ଘରକୁ ତୋତେ ବୋହୂକରି ଆଣିବି ।' ଅବଶ୍ୟ ଉପହାସରେ ହୋଇପାରେ, କିଛି ଆଶ୍ୱାସନା ପାଇଁ ମଧ୍ୟ କହିପାରିଥାନ୍ତି । କିନ୍ତୁ ଏପରି ଏକ ପରିସ୍ଥିତି ସମ୍ଭବ ବି ହୋଇପାରେ ସେଥିପାଇଁ ଖୁବ୍ ଗର୍ବ ଅନୁଭବ କରୁଥିଲି । ସ୍କୁଲରେ ସାଙ୍ଗମାନଙ୍କ ପାଖରେ କୁହେ, 'ଭଗବାନଙ୍କ ଦୟାରୁ ପାଠ ଶୀଘ୍ର ସରିଯାନ୍ତା କି ବୋହୂ ହୋଇଯାନ୍ତି ସେ ମାର୍ବଲ ଚଟାଣ ଘରକୁ ।'

ବିବାହଯୋଗ୍ୟା ହେଲି ବି ଖୁବ୍ କମ୍ ବୟସରୁ । ଦେହର ମାଂସପେଶୀ ପରିଷ୍କାର ଦିଶିଲାଣି । ଦିନେ ସନ୍ଧ୍ୟାରେ ତାଙ୍କ ଘରୁ ଫେରୁଛି, ତାଙ୍କ ପୁଅ ସୌମେନ୍ ମୋତେ କୁଣ୍ଢାଇ ପକାଇଲା ସେ ସ୍ତ୍ରୀର ମୂର୍ତ୍ତିତଳେ । ଅନ୍ଧକାର ହୋଇ ଆସୁଥିଲା ।

କହିଲା, ''ନୀରୁ ! ମୁଁ ତୁମକୁ ପ୍ରେମ କରେ । ବିବାହ କରିବି । ଆଜି ରାତିରେ ଆସ । ମୋର ସେ କୋଠରୀ ପାଖରେ ଅପେକ୍ଷା କରିଥିବି ।''

ଲାଜ ସରମରେ ସେ ରାତିରେ ଅଧମରା ହୋଇଗଲି । ମନେ ମନେ ଭାବିଲି, ଏ ତ ସବୁ ଦେବଦାସର କଥା ବୋଧହୁଏ । ପାରୁଲ ଯିବ ତା'ର ଦେବ ଦା' ଘରକୁ । ସଂସାର, ସମାଜ ସମସ୍ତେ ପଛରେ ରହିବେ । ଅନ୍ଧକାର ହୋଇଥିବ ରାତ୍ରି । ପ୍ରେମର ନିମନ୍ତ୍ରଣ ଜଣାଇବ । ଆଖି ଆଗରେ ସବୁ କଥା ପରିଷ୍କାର ଭାବରେ ଦେଖାଯାଉଥିଲା ।

ରାତି ଅଧ ହେଲା । ମୁଁ ଛପି ଛପି ବାହାରିଲି ମୋ କୋଠରୀରୁ । ମା' ଶୋଇଥାଏ । ଆସ୍ତେ ଆସ୍ତେ ଦରଜା ଖୋଲି ଦାଣ୍ଡକୁ ବାହାରିଲି । ଦେଖିଲି ରାସ୍ତାରେ ପୁଲିସବାଲା । ଦୌଡ଼ିକରି ଘର ଭିତରକୁ ପଶି ଆସିଲି ।

ପୁଲିସବାଲାଟା ସନ୍ଦେହ କଲା କିଏ ଚୋର ପଶିଛି କି କ'ଣ ? କବାଟ ବାଡ଼େଇଲା । ମା' ଉଠିଲା । ଦେଖିଲା ମୁଁ ସାଜସଜ୍ଜା ହୋଇ ବାହାରିଛି କେଉଁଆଡ଼େ ଯିବି ବୋଲି । କାନ୍ଦି କାନ୍ଦି ସବୁ କଥା ତା'ରି ପାଖରେ କହିଲି ।

ତହିଁ ପରଦିନ ମା' ପ୍ରସ୍ତାବ ପକାଇଲା ତାଙ୍କ ସ୍ତ୍ରୀଙ୍କ ପାଖରେ । ସେ ହସି ହସି ଗଡ଼ିଗଲେ । ମୁଁ ନିଜେ ଯାଇ ପଚାରିଲି ସୌମେନ୍‌କୁ । ସେ ବି ହସିଲା—କହିଲା—ସେ ତା' କଲେଜରେ ସେଇପରି କାଳେ ଅନେକ ଝିଅଙ୍କୁ କହେ । କେତେକ ମଧ୍ୟ ତା' ଘରକୁ ଆସନ୍ତି । ସେ ସମସ୍ତଙ୍କୁ ଯଦି ବିବାହ କରେ, ତା'ହେଲେ ତାକୁ କାଳେ ଗୋଟିଏ ବିରାଟ ହାରେମ୍ ରଖିବାକୁ ପଡ଼ିବ, ରାଜା ମହାରାଜାଙ୍କ ପରି ।

ସେ ଉପହାସ, ସେ ତାଚ୍ଛଲ୍ୟ ହସ ଆଜି ପର୍ଯ୍ୟନ୍ତ ମଝିରେ ମଝିରେ କାନରେ ପଡ଼େ । ତା'ପରେ ଆମେ ସେ ବସ୍ତି, ସେ ଘର ଛାଡ଼ି ବାହାରି ଆସିଲୁ ।

ଭାରି ମଜା କଥା ହେଲା । ସେଦିନ ରାତି ଡିନାରରେ ଦେଖେ ଯେ, ଅନ୍ୟମାନଙ୍କ ଭିତରେ ଆସିଛନ୍ତି ସୌମେନ୍ । ତାଙ୍କ ସାଥୀରେ ଆଉ ଜଣେ ନାରୀ । ତାଙ୍କର ସ୍ତ୍ରୀ । ମୁଁ ଅତିଶୀଘ୍ର ସେ ବୟସ୍କ ଲୋକଙ୍କ ପାଖକୁ ଯାଇ କହିଲି, "ମୋ ସଂକ୍ରାନ୍ତରେ ଯଦି କେହି ପଚାରେ, ଆପଣ କହିବେ ମୁଁ ଦିଲ୍ଲୀରୁ ଆସିଛି ଆପଣଙ୍କ ସାଙ୍ଗରେ ।"

ଚମତ୍କାର ଭାବରେ ମୋ' ଅବସ୍ଥାକୁ ପରିଚାଳନା କଲେ ସେ ପ୍ରୌଢ଼ । ମୁଁ ହେଲି ତାଙ୍କର ବ୍ୟକ୍ତିଗତ ସେକ୍ରେଟାରୀ । ବନ୍ଧୁବାନ୍ଧବମାନଙ୍କୁ ରିସେପ୍‌ସନ୍ ଦେବାପାଇଁ ମୋର ଚାକିରି ।

ସୌମେନ୍ ମୋତେ ପଚାରିଲେ, "ଆପଣଙ୍କୁ କେଉଁଠି ଦେଖିଲାପରି ମନେ ହେଉଛି ?"

ଓଠ ଚାପି ଉତ୍ତର ଦେଲି, "ଗତ ଜନ୍ମରେ ହୁଏତ ହୋଇଥିବ, କିନ୍ତୁ ଏ ଜନ୍ମରେ କଲିକତାରେ ଏଇ ମୋର ପ୍ରଥମ ପଦକ୍ଷେପ ।" ଏଇ ଉତ୍ତରକୁ

ଇଂରାଜୀରେ ତର୍ଜମା କରି ରିହରସାଲ କରି ଆଗରୁ ରଖିଥାଏ । ଦେଖିଲି ସୌମେନ୍ ମୋ ଆଡ଼କୁ ଚାହିଁ ରହିଛି । କଥାବାର୍ତ୍ତାରେ ବିଶେଷ ମନ ଦେଉନାହିଁ । ଯୋଜନା କରି ଡିନାର୍ ଟେବୁଲରେ ମୋରି ପାଖରେ ବସିଲା । ମଝିରେ ମଝିରେ ଜାଣି ଜାଣି ମୋ' ଗୋଡ଼ରେ ତା' ଗୋଡ଼ ବଜାଇ ଦେଉଥାଏ । ମୁଁ ଏହି ଦୁର୍ଘଟଣାକୁ ପରିଷ୍କାର କରି ଦେଉଥାଏ ତା'ର ନିକଟରେ ଆସୀନା ସ୍ତ୍ରୀଙ୍କ ପାଖରେ । କ୍ଷମା ମାଗୁଥାଏ ବାରମ୍ବାର ।

ମୁଁ ଯେତେବେଳେ ବାଥ୍ରୁମ୍କୁ ଯାଉଥାଏ, କିଛି ଆଳ କରି ସେ ମଧ୍ୟ ମୋ ପଛେ ପଛେ ଆସି, ଟିକିଏ ଧକ୍କା ଲଗାଇ ଦିଏ ଦେହରେ । ନହେଲେ ପଦେ ଦୁଇ ପଦ କଥା କହେ । ଅବାନ୍ତର କଥା ।

ସେ ଡିନାର୍ ପାର୍ଟି ଚାଲିଲା ରାତି ଦୁଇଟା ପର୍ଯ୍ୟନ୍ତ । ଖିଆ ହେଲା । ପିଆ ହେଲା । ଇଂରେଜୀ ନାଚ୍ ହେଲା ସେ କୋଠରି ଭିତରେ । ମଦ ପିଇ ସମସ୍ତେ ମତୁଆଲା ହେଲେ । ସ୍ତ୍ରୀମାନେ ଗୋଟାଏ କୋଳରୁ ଅନ୍ୟ କୋଳକୁ ନୃତ୍ୟପାଇଁ ପରିବର୍ତ୍ତିତ ହେଉଥାନ୍ତି । କେବଳ ଭାଗୀଦାର ହେଉ ନଥାଏ ମୁଁ । ପ୍ରଥମତଃ ମୁଁ ଏସବୁ ଜାଣି ନଥାଏ । ଦ୍ୱିତୀୟରେ ସେ ଭଦ୍ରଲୋକଙ୍କର ପ୍ରତିଷ୍ଠା ମଧ୍ୟ ବଞ୍ଚାଇବାକୁ ହେବ । କାରଣ ମୁଁ ତାଙ୍କ ସେକ୍ରେଟାରୀ । ତୃତୀୟରେ ଏ ପରିସ୍ଥିତି, ଏ ଭୂମିକା, ଏ ପରିସର ସବୁ ମୋ ପାଇଁ ନୂଆ । ମୁଁ ଖାଲି ଦେଖୁଥାଏ । ଚାହୁଁଥାଏ । ମନ ଭିତରେ କେମିତି ଗୋଟାଏ ଉଚ୍ଛୃଙ୍ଖଳତା ଆସୁଥାଏ । ଭାବୁଥାଏ ନିର୍ମଳାଟା ଆହୁରି ମରିବା ଆବଶ୍ୟକ । ମିସ୍ ନୀରାଙ୍କୁ ଦେଖୁଥାଏ ଏଇ ଉପସ୍ଥିତ ନାରୀମାନଙ୍କ ଭିତରେ ।

କିଛି ସମୟ ପରେ ସୌମେନ୍ ଆସି ମୋତେ ଗୋଟାଏ ଆଲୋଚନା ବାହାନାରେ ସେ କୋଠରିରୁ ଅନ୍ୟ କୋଠରିକୁ ନେଇଗଲେ । ମୋର ଦୁଇ ବାହୁକୁ ଜୋର କରି ଧରି ପକାଇଲେ । ମୁଁ ଜୋର କରି ମୁକ୍ତି ନେଲି । ଆଖି ଆଗରେ ଖେଳିଗଲା ସେହି ଉପହାସ, ସେହି ତାଚ୍ଛଲ୍ୟ ହସ । କ୍ରୋଧ ହେଲା । ଠାଏ କରି ଚଟକଣାଟିଏ ପକାଇଲି ତାଙ୍କରି

ଗାଲରେ । ସୌମେନ୍ ମୁହଁରେ କିପରି ଗୋଟାଏ ହିଂସ୍ର ଦୃଷ୍ଟି ଅଛି, ଘୃଣ୍ୟଦୃଷ୍ଟି । କୌଣସି ସ୍ତ୍ରୀ ଏପରି ପୁରୁଷକୁ ଚାହିଁବ ନାହିଁ । ସେ ମାର୍ବଲ ଚଟାଣ ପାଇଁ ସିନା ମୋ'ର ଆକାଂକ୍ଷା ଥିଲା, ନଚେତ୍ ସେ ପୁରୁଷଟା ପାଇଁ ମୋର କେବେ କିଛି ଆଗ୍ରହ ନଥିଲା । ଏ ଘଟଣାକୁ ମଧ ବର୍ଣ୍ଣନା କଲି ତାଙ୍କ ସ୍ତ୍ରୀଙ୍କ ପାଖରେ । ଉତ୍ତ୍ୟକ୍ତା ହେଲେ ସ୍ତ୍ରୀ । ମୁଁ ନେଲି ପ୍ରତିଶୋଧ ।

ଭଦ୍ରଲୋକ, ଭଦ୍ରମହିଳାମାନେ ବିଦାୟ ନେଲେ, କିନ୍ତୁ ସେ ଗପର 'ଆଲିସ୍' ଝିଅପରି ଏକ ନୂଆ ଜଗତକୁ ଆସିଲି । ଏତେ ଉଚ୍ଚସ୍ଥାନ, ଏତେ ସମ୍ଭୋଗ, ଏତେ ସହଜରେ ପ୍ରାପ୍ୟ ? ସେ ଟାଇପ୍, ସେ ଶିକ୍ଷୟିତ୍ରୀ, ସେ ଦୋକାନ କାମ ଏତେ ଯନ୍ତ୍ରଣାଦାୟକ ଥିଲା, ତଥାପି ବଞ୍ଚିବା ଦୁଷ୍କର ହେଉଥିଲା । ବର୍ତ୍ତମାନ କେତେକ ସମୟପାଇଁ ନିଜର ରୂପ ପରିବର୍ତ୍ତନ କଲି । ଉପଭୋଗ କଲି ସବୁଠୁ ଐଶ୍ୱର୍ଯ୍ୟପୂର୍ଣ୍ଣ ବାସସ୍ଥାନ, ସୁନ୍ଦରତମ ସୁଖାଦ୍ୟ, ଧନାଢ଼୍ୟ, ପ୍ରତିଷ୍ଠିତ ଜନତାର ସାନ୍ନିଧ—ସାମାନ୍ୟ ମୂଲ୍ୟବୋଧର ବିନିମୟରେ ।

ସେହିଦିନ ରାସ୍ତାର ପରିବର୍ତ୍ତନ ହେଲା, ରୂପର ପରିବର୍ତ୍ତନ ହେଲା, ନାମର ପରିବର୍ତ୍ତନ ହେଲା । ପଦେ ପଦେ ଅନ୍ଧକାର ଗହ୍ୱର ଭିତରକୁ କ୍ରମେ ଆଗେଇଲି । ହେଲି ଗଣିକା । ସୌମେନ୍ ଆସିଛି । ମୁଁ ମୋର କୋଠରିର ଚଟାଣକୁ ମାର୍ବଲ ପଥରରେ କରିଛି, ତାରି ସ୍ତ୍ରୀର ଗହଣା ଜରିଆରେ କରିଛି । ସେ ଦୋକାନ ମାଲିକଙ୍କର ପୂର୍ବବନ୍ଧୁମାନେ ବ୍ୟାକୁଳ ଭାବରେ ଅପେକ୍ଷା କରିଥାନ୍ତି ମୋର ଆଦେଶପାଇଁ । ମଝିରେ ମଝିରେ ନୃତ୍ୟ କରି ସେମାନଙ୍କୁ ଉଚ୍ଛୃଙ୍ଖଳ କରେ । କେହି ଚାହିଁଲେ କହେ, ଅନ୍ୟ ରାତ୍ରିକୁ ବା ସେମାନଙ୍କର ଯଥେଷ୍ଟ ଅର୍ଥ ନାହିଁ ମୋତେ ଉପଭୋଗ କରିବାପାଇଁ । ହେଲି ପତିତା । କିନ୍ତୁ ପାଇଲି ଅର୍ଥ, ସମ୍ଭୋଗ, ଐଶ୍ୱର୍ଯ୍ୟ । ମନ୍ଦ ନୁହେଁ । କିଛି ବନ୍ଧନ ନାହିଁ । ଅଥଚ ନାରୀତ୍ୱର ସମସ୍ତ ସୁଯୋଗର ଉପଭୋଗ କଲି ।''

କାଉଲ୍ ପଚାରିଲେ, ''ସମସ୍ତ ସୁଯୋଗ ?''

କିୟତ୍ ମୁହୂର୍ତ୍ତ ପାଇଁ ଚିନ୍ତା କଲେ ନୀରା । କହିଲେ, ‘‘ଅନେକ ।’’

ତାଙ୍କର ଘର ଠିକଣାରେ ଗାଡ଼ି ଲାଗିଲା । କାଉଲ୍ ଦେଖିଲେ ଘର ସାମନାରେ ସିମେଣ୍ଟରେ ତିଆରି ଗୋଟିଏ ଉଲଗ୍ନ ନାରୀର ମୂର୍ତ୍ତି । ଘରର ଚଟାଣ ହୋଇଛି ଧଳାକଳା ମାର୍ବଲ ପଥରରେ ଖଞ୍ଜା ।

ନୀରା କହିଲେ, ‘‘ଜୀବନର ଅନେକ କଥା ଗପି ଦେଇଗଲି । ମୋତେ ଘୃଣା କରିବାର ସୁଯୋଗ ଦେଇଛି । ସେଥିପାଇଁ ବାଧ କରିବି ନାହିଁ । କିନ୍ତୁ ଘର ଭିତରକୁ ଆସିବାପାଇଁ ନିମନ୍ତ୍ରଣ ଜଣାଉଛି ।’’

ଘର ଭିତରକୁ ଗଲେ କାଉଲ୍ । ପଚାରିଲେ, ‘‘ନୀରା ! ବାପା ମା’ ତୁମ୍ଭର କାହାନ୍ତି ?’’

କୋଠରି ଦେଖାଇଦେଲେ ନୀରା । ବୃଦ୍ଧାମାତାଙ୍କୁ ପ୍ରଣାମ ଜଣାଇଲେ କାଉଲ୍ । ରୁଗ୍ଣ ପିତାଙ୍କ ପାଖରେ ଆସୀନ ହେଲେ କେତେକ ସମୟ ପାଇଁ । ଦେଖିଲେ ଦାରିଦ୍ର୍ୟ ଓ ତତ୍‌ପରବର୍ତ୍ତୀ ଐଶ୍ୱର୍ଯ୍ୟ ସେମାନଙ୍କର ବ୍ୟକ୍ତିତ୍ୱକୁ ରୁଦ୍ଧ କରିଦେଇଛି । ଲକ୍ଷ୍ୟକଲେ ଦାରିଦ୍ର୍ୟର ଦୁଃଖ, ଐଶ୍ୱର୍ଯ୍ୟ, ଲଜ୍ଜାର କ୍ଷତବିକ୍ଷତ ଦାଗ ।

ବୃଦ୍ଧାମାତା କାଉଲଙ୍କୁ କହିଲେ, ‘‘ବାବା ! ଏ ଅଭିଶପ୍ତ ଜୀବନ । ଏହାଠାରୁ ମୃତ୍ୟୁ ବରଂ ଶ୍ରେୟସ୍କର । କିନ୍ତୁ ଜୀବନର ତ ଲୋଭ ଅଛି ! ଗତ ବର୍ଷ ବର୍ଷ ଧରି ଆମେ ଘରୁ ପଦାକୁ ବାହାରି ନାହୁଁ । କୌଣସି ବନ୍ଧୁବାନ୍ଧବଙ୍କ ସହିତ କୌଣସି ସମ୍ପର୍କ ନାହିଁ । ଆମେ ଗଣିକାର ପିତାମାତା ।’’

କାଉଲ୍ ଭାବିଲେ ଲେଖକ, ଚିତ୍ରକର, ଗଣିକାର ଇତିହାସ ଲେଖିଛନ୍ତି । କିନ୍ତୁ ସେମାନଙ୍କର ପିତାମାତା —ଯେଉଁମାନେ ଅପମାନର ଅଗ୍ନିରେ ଅହରହ ଜ୍ୱାଳା ପାଉଛନ୍ତି, ସେମାନଙ୍କର ଦୁଃଖ ହେଉଛି ଆହୁରି ବାସ୍ତବ, ଆହୁରି ମର୍ମନ୍ତୁଦ । ସେମାନଙ୍କର ଦୁଃଖର କୌଣସି ପ୍ରତିଦାନ ନାହିଁ । ପ୍ରତ୍ୟୁତ୍ତର ନାହିଁ ।

କୋଠରି ଭିତରେ ଛିଡ଼ାହୋଇ କାଉଲ୍ ଦେଖୁଛନ୍ତି—'ଶିକାରୀର ଶରବିଦ୍ଧ, ଆସନ୍ନମୃତ ଦୁଇଟି କ୍ଷୁଦ୍ରପକ୍ଷୀ । କୌଣସି ସାହାଯ୍ୟ ନାହିଁ । କିଛି ସମର୍ଥନ ନାହିଁ । ସମଗ୍ର ସଂସାରରେ ସେମାନେ ହୀନତମ । ଯନ୍ତ୍ରଣାରେ ଉତ୍କ୍ଷିପ୍ତ ହେଉଅଛି ଦୁଇଟି ପ୍ରାଣ ।

କିଛି ସମୟ ଅପେକ୍ଷା କରି ନିର୍ଗତ ହେଲେ କାଉଲ୍ ସେ କୋଠରିରୁ । ବାହାରେ, ପରଦାର ପଛଆଡ଼େ ଦେଖିଲେ ଛିଡ଼ାହୋଇଛନ୍ତି ନୀରା । ଆଖିରେ ଲୁହ ଭରିଯାଇଛି । କାକୁତି ମିନତି କରି କ୍ଷମା ଚାହିଁଲା ପରି ଅନାଉଚ୍ଛନ୍ତି କାଉଲ୍‌ଙ୍କୁ । କାଉଲ୍ ନୀରାଙ୍କର ଦୁଇଟି ହାତଧରି କହିଲେ, ''ନୀରା ! ଲୋତକ ଭବିଷ୍ୟତର ପଥକୁ ଝାପ୍‌ସା କରେ । ପାଦ ହେବ ଦୁର୍ବଳ । ସମ୍ଭବ ହେବନାହିଁ ପ୍ରଗତି ।''

ଦୁଇଟି ଅବାଧ ଟୋପା କାଉଲ୍‌ଙ୍କ ହାତ ଉପରେ ପଡ଼ିଲା । ନୀରା ନିଜକୁ ସଂଯତ କରି ରହିପାରିଲା ନାହିଁ । ଆଶ୍ରୟ ନେଲେ କାଉଲ୍‌ଙ୍କ କୋଳରେ । ଲୁହର ଧାରା ବୋହିଯାଉଥାଏ । ନୀରା କହୁଥାଆନ୍ତି—''କାଉଲ୍ ସାହେବ ! ଏ ନର୍କରୁ ମୁକ୍ତି ଚାହେଁ, ନିଷ୍କୃତି ଚାହେଁ । ଏ ଜୀବନରେ ସୁଖସମ୍ଭୋଗ ବିଷୟରେ ଯାହା କହିଛି ସେ ସବୁ ମିଛ, ସବୁ ପ୍ରତାରଣା । ଜୀବନ ଅସହ୍ୟ ମନେହେଉଅଛି । ସହ୍ୟ ହେଉନାହିଁ ଏ ଅପମାନ, ଏ ଘୃଣା, ଏ ଜୀବନ ।''

କିଛିକ୍ଷଣ ପରେ କାଉଲ୍ ବିଚ୍ଛିନ୍ନ କଲେ ନୀରାଙ୍କୁ ନିଜ ଶରୀରରୁ । କହିଲେ, ''ନୀରା, କଳଙ୍କର କ୍ଷମା ଅଛି, କିନ୍ତୁ ଅସହାୟତାର କୌଣସି ପରିପୂରକ ନାହିଁ । ଛିଡ଼ାହୋଇ ଶିଖ ନିଜ ଗୋଡ଼ରେ । ମୁକାବିଲା କର ଜଗତକୁ, ସଂସାରକୁ ।''

ଲୁହ ପୋଛି ନୀରା ସ୍ଥିର ଭାବରେ ଛିଡ଼ାହେଲେ ଗ୍ରୀକ୍ ଦେଶର ପ୍ରସ୍ତର ମୂର୍ତ୍ତିପରି ।

ବିଦାୟ ନେଲେ କାଉଲ୍ ।

★ ★ ★

ଦୁଇବର୍ଷ ପରେ ଫେରିଆସିଲେ କାଉଲ୍ ପୁଣି ସେ ସହରକୁ । ଉଡ଼ାଜାହାଜରୁ ଓହ୍ଲାଇ ହୋଟେଲରେ ପହଞ୍ଚି ସର୍ବପ୍ରଥମେ ଗଲେ ନୀରାଙ୍କ ଘରକୁ । ସେତେବେଳକୁ ସନ୍ଧ୍ୟା ହୋଇଆସିଲାଣି । ଆଲୋକସବୁ ଫୁଲର ମାଳାପରି ସଡ଼କକୁ ସଜାଇ ଦେଇଛି ।

ଘର ଭିତରେ ପହଞ୍ଚି ଭେଟିଲେ ନୀରାଙ୍କୁ । ଦେଖିଲେ ସେ ରୂପର ମାଦକତା ନାହିଁ । ସେ ଚାହାଣୀରେ ଆଉ ନାହିଁ ଉଚ୍ଛାଙ୍ଗ ଇଙ୍ଗିତ । ଶାନ୍ତ, ଶୁଭ୍ର, ରୂପପ୍ରାଙ୍ଗଣର ତୁଳସୀଗଛ ପରି ପ୍ରସାଧନବିହୀନ ନୀରା । ବିଧବାର ଗୌରବରେ ଉଦ୍‌ଭାସିତ । କିଛିକ୍ଷଣ ଦୁହେଁ ଦୁହିଁଙ୍କୁ ଚାହିଁଲେ ।

ନୀରା କହିଲେ, ''କାଉଲ୍ ! ତୁମେ ମନୁଷ୍ୟ ନୁହଁ—ତୁମେ ମହାତ୍ମା ।''

''ନୀରା ! ଏହାକୁ ତୁମେ ଲେଖ । ମୁଁ ପ୍ରଚାରପତ୍ର କରି ବାଣ୍ଟିବି । ଗୋଟିଏ ପରିଣାମ ନିର୍ଧାର୍ଯ୍ୟ । ତୁମେ ପୂର୍ଣ୍ଣ ପାଗଳ ବୋଲି ସାବ୍ୟସ୍ତ ହେବାରେ କିଛି ବାଧା ରହିବ ନାହିଁ ।''

କାଉଲ୍ ପଚାରିଲେ, ''ବାପା ମାଆ କାହାନ୍ତି ?''

''ଯାଇଛନ୍ତି କାଳୀ ମନ୍ଦିରକୁ ।''

ନୀରା କହିଲେ, ''କାଉଲ୍ ! ଜାଣେ, ତୁମର ଧନର ହୁଏତ ଅଭାବ ନାହିଁ । କିନ୍ତୁ କାହିଁକି ବିଳୟ କଲ ତୁମର ଏତେ ଅର୍ଥ ? କାହିଁକି ଏ ତ୍ୟାଗ ? କାହିଁକି ବଞ୍ଚିତ କଲ ନିଜର ପରିବାରକୁ ?''

କାଉଲ୍ କହିଲେ, ''ନୀରା, ଜୀବନରେ ମୁଁ ପିତୃମାତୃହରା । ଭାବିଲି ଏ ଦୁଇଜଣଙ୍କ ଯନ୍ତ୍ରଣାର ଉପଶମ କରିବି । ତା'ଛଡ଼ା ଏ ଯେଉଁ ଅର୍ଥ, ଏହାର ଜନ୍ମ ମଧ୍ୟ କଳଙ୍କରୁ । ସେଦିନ ତୁମ ଘରୁ ଯାଇ ଅଫିସରେ ଗୋଟିଏ କଥାବାର୍ତ୍ତା ହେଲା । କଳାବଜାର କଥା । ଯାହା ମୋର ପ୍ରାପ୍ୟ ତା'ଠୁ

ଅଶେଷ ଅଧିକ ଅର୍ଥ ପାଇଲି । ଭାବିଲି ଏହା ଉପରେ ଅଧିକାର ତୁମ ପିତାମାତାଙ୍କର, ତୁମର ବି ।''

ସେଦିନ ସଂଧ୍ୟାରେ ଖୁବ୍ ଅସ୍ୱସ୍ତି ଅନୁଭବ କରିଥିଲେ କାଉଲ୍ । ତାଙ୍କର ଆଖି ଆଗରେ ଦେଖାଯାଉଥିଲା ବୃଦ୍ଧ, ରୁଗ୍ଣ ଦୁଇଟି ଅସହାୟ ଶରୀର । ଚେଷ୍ଟାକଲେ ସ୍ମରଣ କରିବାପାଇଁ ନିଜର ପିତାମାତାଙ୍କୁ । କୌଣସି ଚିତ୍ର ମନରେ ଧରିଲା ନାହିଁ । ଭାବିଲେ ଏହିପରି ହତାଶ ହୋଇ ବିଲୁପ୍ତ ହୋଇଥିବେ ତାଙ୍କର ନିଜ ପିତାମାତା । ପିତାମାତା ପ୍ରତି ଜାଗ୍ରତ ହେଲା କାଉଲ୍‌ଙ୍କ ମମତା । ସେ ସଂଧ୍ୟାରେ ସମସ୍ତ ଉପାର୍ଜନର ଗୋଟାଏ ଅଂଶ ପଠାଇଲେ କାଉଲ୍, ନୀରାର ପିତାମାତାଙ୍କ ଉଦ୍ଦେଶ୍ୟରେ । ଲେଖିଲେ, ''କାଉଲ୍‌ର ଏହା ହେଉଛି ତା'ର ପିତାମାତାଙ୍କ ପ୍ରତି ଅର୍ଘ୍ୟ, ପ୍ରଣାମୀ । ଏ ଅର୍ଥର ସାହାଯ୍ୟରେ ତାଙ୍କର ଭବିଷ୍ୟତ ଜୀବନ ବିତାଇଦେଇ ପାରିବେ ।''

ନୀରାକୁ ପଠାଇଲେ ଅନ୍ୟ ଏକ ଅଂଶ । ଲେଖିଲେ ''ନୀରା ! ଯଦି ଚାହଁ, ଏହି ଅର୍ଥର ବିନିମୟରେ ତୁମେ ଫେରି ଆସିପାରିବ ତୁମର ପୂର୍ବ ଜୀବନକୁ, ଯାହା ଶୁଦ୍ଧ, ଯାହା ପବିତ୍ର ବୋଲି ମନେକର । ନଚେତ୍ ଏହାକୁ ତୁମର ଅତୀତ ଜୀବନର ବର୍ଣ୍ଣନାର ପୁରସ୍କାର ସ୍ୱରୂପ ଗ୍ରହଣ କରିବ ।''

ନୀରା ସ୍ଥାପନ କରିଛନ୍ତି ବିଦ୍ୟାଳୟ—ପତିତା ଗଣିକାର ଶିଶୁମାନଙ୍କ ଉଦ୍ଦେଶ୍ୟରେ । ନିଜର ଚେଷ୍ଟା, ଅନ୍ୟର ସାହାଯ୍ୟରେ ଗଢ଼ିଉଠିଛି ଏ ଅନୁଷ୍ଠାନ । ଅର୍ଥର ଆଗମନ ବ୍ୟତୀତ ନୀରା ଫେରି ପାଇଛନ୍ତି ବିଲୁପ୍ତ ସମ୍ମାନର ବିଗତ ପ୍ରତିଷ୍ଠା ।

ନୀରା କହିଲେ, ''ତୁମର କି ରୀତି ଅଛି ଜାଣେନାହିଁ । ଆମର ଏଠି ମୁଣ୍ଡରେ ଟିପା ଦେଇ ପ୍ରଣାମ ଜଣାଇ ଅନ୍ୟକୁ ଭାଇ ବୋଲି ଗ୍ରହଣ କରାଯାଏ, ଅବଶ୍ୟ ଯଦି ସେ ଭାଇର ଆପତ୍ତି ନ ଥାଏ ।''

କାଉଲ୍‌ଙ୍କ ମୁଣ୍ଡରେ ଟିପା ଦେଲେ ନୀରା । ପ୍ରଣାମ ଜଣାଇଲେ କାଉଲ୍‌ଙ୍କ ପାଦତଳେ । ନୀରାଙ୍କୁ ଆଶୀର୍ବାଦ ଜଣାଇଲେ କାଉଲ୍ । କୋଳକୁ ଟାଣିନେଲେ । କୋଳ ଭିତରେ ଶିଶୁଟି ପରି ଚାହୁଁଥାନ୍ତି ନୀରା କାଉଲ୍‌ଙ୍କର ମୁହଁକୁ । କାଉଲ୍ ଦେଖିଲେ ନୀରାଙ୍କର ଏ ନୂତନ ରୂପ । ମମତାଭରା, କୋମଳ, ଶାନ୍ତ, ପବିତ୍ର ନାରୀତ୍ୱ ।

ରାତ୍ରି .................

ପ୍ରିନ୍‌ସେସ୍‌ରେ ଡିନାର ସାଙ୍ଗରେ କାବାରେ ଚାଲିଛି, ମେକ୍‌ସିକୋ ଦେଶର ଉଲଗ୍ନ ନୃତ୍ୟର ଦୃଶ୍ୟ । ମଦିରାଭରା ହୃଦୟକୁ ଚଞ୍ଚଳ କରୁଛି । କାଉଲ୍ କହିଲେ, "ଦାସ ସାହେବ ! ପାପର କରାମତି କଣ ଜାଣ ? ଦର୍ପୀ କର୍ଣ୍ଣର ଉଦ୍ଧତ ଭାରା ସହି ନପାରି ଲକ୍ଷ୍ମୀ କାଳେ ତାଙ୍କୁ ପ୍ରତ୍ୟହ ଭାରେ ସୁନା ଉପହାର ଦେଉଥିଲେ । ମୋ ପାଇଁ କିନ୍ତୁ ମିଳିଲା ଅଜସ୍ର ବ୍ୟାଙ୍କ୍ ବାଲାନ୍‌ସ । ମୋ ପାପର ଭାର ବୋଧହୁଏ ସହ୍ୟ କରିପାରିଲେ ନାହିଁ ମା' ଲକ୍ଷ୍ମୀ । ମଝିରେ ମଝିରେ ମତେ ଦେଲେ ଫରେନ୍ ଏକ୍‌ସଚେଞ୍ଜ୍ ।"

"ଲକ୍ଷ୍ମୀଙ୍କ ଉପହାର ତ ସସମ୍ମାନେ ଆସୁଥିଲା, ନର୍ତ୍ତକୀମାନଙ୍କ ଗହଣରେ । ତୁମ ପାଇଁ କ'ଣ କଷ୍ଟମସ୍ ?"

"ମୋ କ୍ଷେତ୍ରରେ ନର୍ତ୍ତକୀମାନେ ସବୁବେଳେ ଉର୍ବଶୀ, ମେନକା ନଥିଲେ — ମଝିରେ ମଝିରେ ଆଲିବାବାର ସାଓନାରା ମଧ୍ୟ ଥିଲେ । ଗୋଟିଏ ହାତରେ ସୁରା ପିଆଲା ବଢ଼ାଇଦେଇ ଆର ହାତରେ ଥିଲା ଛୁରା ବନ୍ଦୋବସ୍ତ । ବେଳେବେଳେ ଫୁଲର ମାଳା ପରିବର୍ତ୍ତେ ଲୁହାର ହାତକଡ଼ି ମଧ୍ୟ ପହଞ୍ଚେ । କିନ୍ତୁ ସେଇ ପାପର ଭରସାରେ କେତେ ଯେ ଜୀବନ ସାହାରା ଟପିଛି, ତା'ର ଇୟତ୍ତା ନାହିଁ । ସାମାନ୍ୟ ଉପହାର, ସାମ୍ୟ ବଣ୍ଟନ ବା କେତେକ କ୍ଷେତ୍ରରେ ମାମୁଲି ଜୋରିମାନା ଦେଇ ମୁକୁଳିଛି ।"

ଟିକିଏ ନିଃଶ୍ୱାସ ମାରି ପୁଣି କହିଲେ, ''ମନେହୁଏ ପୁଣ୍ୟଟା ଦୋଦୁଲ୍ୟମାନ ସୁପରଫିସିଆଲ୍ । ବିଶ୍ୱାସ କରାଯାଇ ପାରେନାହିଁ । କିନ୍ତୁ ପାପଟାର ସୁଦୃଢ଼ ଗଭୀର ଭିତ୍ତି, ସର୍ବଦା ନିର୍ଭରଯୋଗ୍ୟ । ଶିଶୁକୁ ଦେଖ । ତାର କେତେ ହିଂସା, କେତେ ଲୋଭ, ଗୋଟିଏ ଖେଳନା ପାଇଁ, ଖଣ୍ଡେ ପୋଷାକ ଲାଗି । ସାମାନ୍ୟ ପଦାର୍ଥପାଇଁ ଅନ୍ୟ ସହିତ ଯୁଦ୍ଧ ଘୋଷଣା କରେ ଅକୁଣ୍ଠିତ ଚିତ୍ତରେ । କିନ୍ତୁ ତ୍ୟାଗପାଇଁ, ସତ୍ୟପାଇଁ, ସେବାପାଇଁ, ବୁଦ୍ଧ, ଯୀଶୁ, ମହମ୍ମଦ, ଗାନ୍ଧୀ ମୁଣ୍ଡ ବାଡ଼େଇ ବାଡ଼େଇ ରହିଲେ । ପୋଥି ଉପରେ ପୋଥି ସରିଗଲା । ମନ୍ଦିର, ଗୀର୍ଜା, ମସ୍‌ଜିଦରୁ ଉଚ୍ଚକଣ୍ଠରେ ଚିତ୍କାର କରି କୁହାଗଲା । କିନ୍ତୁ ପରିଣାମରେ, ସ୍ୱାର୍ଥପାଇଁ ଅବଲମ୍ବନ ଛଡ଼ା, ତ୍ୟାଗ, ସତ୍ୟ, ସେବାର କୌଣସି ମୂଲ୍ୟ ଆଜି ନାହିଁ । ପାପ ଆଦିମ, ପାପ ମୌଳିକ । ପୁଣ୍ୟ ସୌଖୀନ, ପୁଣ୍ୟ କ୍ଷଣସ୍ଥାୟୀ ।''

ପୁଣି ଟିକିଏ ସମୟ ଗୁମ୍‌ମାରି ରହିଯାଇ ଆରମ୍ଭ କଲେ କାଉଲ୍ । କହିଲେ, ''ମନୁଷ୍ୟ ଇତିହାସର ଏ ବିଶାଳ ଦର୍ଶନକୁ ଆମେ ଓ ଆମପରି ବ୍ୟବସାୟୀମାନେ ବୋଧହୁଏ ଭଲଭାବରେ ଉପଲବ୍ଧି କରିଛୁ ।''

''କାଉଲ୍ ! ତୁମ୍ଭେ ଆକାଶକୁ ଚାହିଁ ଖାଲି ଦେଖିଲ ଘମାଘୋଟ ବାଦଲ, ଉଚ୍ଛୃଙ୍ଖଳ ବିଦ୍ୟୁତ୍, କର୍କଶ ବଜ୍ର । ଆଉ ସେଇ ଯେଉଁ କ୍ଷୁଦ୍ର ତାରା ଏ ସବୁକୁ ମୁକାବିଲା କଲା—ଶାନ୍ତ ଭାବରେ; ଶେଷରେ ତା'ର ହେଲା ବିଜୟ । ହେଉପଛେ ରାତ୍ରିର ଶେଷ ପ୍ରହର, କିନ୍ତୁ ବିଜୟ ତ ! ଦୂରକୁ ଚାହିଁ ଖାଲି ଦେଖିଲ ରୂପହୀନ, ସଂଜ୍ଞାହୀନ, ଅସୁରାକାର ଦ୍ରୁମ । କିନ୍ତୁ ଯେଉଁ ସୂକ୍ଷ୍ମ ଫୁଲଟି ଏକ କ୍ଷୁଦ୍ର ଲତାର ଆଶ୍ରାରେ ଫୁଟିଉଠିଲା, ଅନ୍ୟକୁ ଦେଲା କୋମଳତା, ଶାନ୍ତି, ତା'ର ଅସ୍ତିତ୍ୱର କିଛି ମୂଲ୍ୟ ନାହିଁ ତୁମ ପାଖରେ ?''

''ଦାସ ସାହେବ ! ମତେ ଲାଗେ ସତ୍ୟ, ଶାନ୍ତି, କୋମଳତା, ଏ ତାରା, ଏ ଫୁଲକୁ ଗୁନ୍ଥି କବିତା ଚଳେ, କିନ୍ତୁ ଜୀବନ ହୁଏ ଦୁର୍ବିସହ । କହ ଏ ମାର୍ବଲ ଫ୍ଲୋର୍, ଏ ଡ୍ରାଇ ସେରି, ଏ ଚାଇନିଜ୍ ଡିନାର୍, ଏ ରୂପସୀ

ନାରୀ, ଏ ଗ୍ରହମାଳାର ବିକଳ୍ପରେ ଚାହିଁ ବି ଅନ୍ଧକାର, ଦାରିଦ୍ର୍ୟ, ଘନ ଅପଚୟ ? ମନ କଳଙ୍କିତ ହେବ, ଶରୀର ହେବ କ୍ଷୁଣ୍ଣ, ଚିନ୍ତା ହେବ ବିଚଳିତ ।''

''କାଉଲ୍ । ଏ ଦୁଇଟି ପରିଣତି ମଧ୍ୟରେ ଗୋଟାଏ ଗୋଲ୍ଡେନ୍ ମିନ୍ ଅଛି । ମଝିର ସଡ଼କ ।''

''ଦାସ ସାହେବ ! ସେଟା ବୋଧହୁଏ ଆକ୍‌ସିଡେ଼ଣ୍ଟ, ଦୁର୍ଘଟଣା । ଯେ କୌଣସି ଦିଗକୁ ଯାତ୍ରା ପଥରେ ପାନ୍ଥଶାଳା ମାତ୍ର । ଦୁଇ ପରିଣତି ଭିତରେ ଗୋଟାଏ ଉଦ୍ଦେଶ୍ୟ କରି ଯାତ୍ରା ଅବଶ୍ୟମ୍ଭାବୀ, ପ୍ରକାଶ୍ୟରେ ହେଉ ବା ଅବଚେ଼ତନାରେ ହେଉ, ରାତ୍ରିରେ ଯେଉଁଠି ଆଶ୍ରୟ ନିଆଯାଏ, ସେଇଠି ଯାତ୍ରାର ଶେଷ ସ୍ଥାନ ନୁହେଁ ।''

''ନଦୀକୋଳରେ ଯେଉଁ ବାଲିକଣା ଆମେ ଦେଖୁ, ସେମାନେ ଜନ୍ମରୁ ସେମିତି ନ ଥିଲେ । ହୁଏତ ଉତ୍ପତ୍ତି ବେଳେ ଥିଲେ ବିରାଟ ପ୍ରସ୍ତରଖଣ୍ଡ । ଆସିଲା ତୋଫାନ, ଆସିଲା ବର୍ଷା, ଆସିଲା ତୁଷାର । ଭାଙ୍ଗିଭୁଙ୍ଗି ଠେଲିଦେଲେ । ଗଡ଼୍‌ଡ଼ାଳିକା ଭିତରେ ଆଶ୍ରୟ ନେଲେ ନଦୀର ବକ୍ଷ ଉପରେ । କେତେ ପାହାଡ଼, ଜଙ୍ଗଲ ଟପି ଧ୍ୱସ୍ତବିଧ୍ୱସ୍ତ ହେଲା ଅଙ୍ଗ । କ୍ଷୁଦ୍ରରୁ କ୍ଷୁଦ୍ରତର ହେଲେ । ଅବଶେଷରେ ପରିଣତ ହେଲେ ବାଲିକଣାରେ ।''

କାଉଲ୍‌ଙ୍କ ଜୀବନ ଇତିହାସ, ପ୍ରକୃତିର ଏ ଭୌଗୋଳିକ ବିବର୍ତ୍ତନ ପରି । କାଉଲ୍‌ଙ୍କ ବଂଶଧରଙ୍କର ଆର୍ଥିକ ସ୍ୱଚ୍ଛଳତା ଥିଲା ଆଇସ୍‌ବର୍ଗ ଭଳି । ଜମିଦାରୀର ଆୟ ତାଙ୍କର ଦୃଶ୍ୟମାନ ସମ୍ପଦର କେବଳ ମାତ୍ର ଏକ ମାମୁଲି ଅଂଶ । ହିସାବ ରଖିବାଟା ନ୍ୟୂନତାର ପରିଚାୟକ ମନେକରି ପୂର୍ବତନ କାଉଲ୍‌ମାନେ ଗଚ୍ଛିତ ସୁନା, ଅର୍ଥର ହିସାବ ରଖୁନଥିଲେ । ଲକ୍ଷ୍ମୀଙ୍କ ଉପରେ ସେମାନଙ୍କର ବିଶ୍ୱାସ ଥିଲା ଅଖଣ୍ଡ ଓ ଅସୀମ । ଯୁଗଯୁଗ ପାଇଁ ସୁନାର ସାଞ୍ଜୁରେ ଯେ ଭବିଷ୍ୟତଟା ସଂରକ୍ଷିତ ଏ ବିଶ୍ୱାସରେ ବିଂଶ ଶତାବ୍ଦୀର ହରିଶ୍ଚନ୍ଦ୍ର ସାଜିଥିଲେ କାଉଲ୍‌ଜୀ, ଆମ କାଉଲ୍‌ଙ୍କର ପିତାମହ । କେହି

କହେ, ଆପଣଙ୍କର ଏ ପାଟଲୁଗାଟା ସୁରମ୍ୟ, ସଙ୍ଗେ ସଙ୍ଗେ ସେହି ଧରଣର ଲୁଗା ମଗାହୋଇ ବଣ୍ଟନ ହେଉଥିଲା ଏ କଳାପ୍ରେମୀ ଗୋଷ୍ଠୀଙ୍କ ମଧ୍ୟରେ । ଆଉ କେହି ଯଦି କହେ ସହର ଭିତରେ ଦୂରରେ ରହିବା ତାଙ୍କ ପକ୍ଷରେ ଅଶେଷ କଷ୍ଟସାଧ, କାରଣ ଶ୍ରୀଛାମୁଙ୍କ ନିତ୍ୟ ନିୟମିତ ଦର୍ଶନରେ ଏ ଦୂରତ୍ୱ ଅନ୍ତରାୟ ହେଉଛି, ସଙ୍ଗେ ସଙ୍ଗେ ତୋଳା ହୋଇଯାଉଥିଲା ବାସସ୍ଥାନ, ନଚେତ୍ ପଶାଖେଳରେ କାଳେ ବାଧା ସୃଷ୍ଟି ହେବ ।

ଥରେ ବିଲାତର ଗୋଟିଏ କମ୍ପାନୀର ପ୍ରତିନିଧି ଆସିଥିଲା, କିଛି କ୍ରିକେରୀ ବିକିବାପାଇଁ । ଅର୍ଡ଼ର ଦିଆଗଲା ପ୍ରତିନିଧିଙ୍କ ସମ୍ମାନାର୍ଥେ ଦୁଇଶହ ସେଫିଲଡ୍ ଛୁରୀ, ଦୁଇଶହ ଗ୍ଲାସ୍‌ଗୋ ପ୍ଲେଟ୍ । ତାଙ୍କ ଦୁଆରୁ କେହି ଖାଲି ହାତରେ ଫେରିନାହିଁ ବୋଲି ଦଶକୋଶ ଭିତରେ ସୁନାମ ଥିଲା । ମହାରାଷ୍ଟ୍ରର ଗୌରବର ଟୀକା ଥିଲେ କାଉଲ୍‌ଜୀ । ତାଙ୍କ ସଂକ୍ରାନ୍ତରେ କିମ୍ବଦନ୍ତୀ ଗାଁଏ ଗାଁଏ ଏବେ ବି ପ୍ରଚଳିତ ।

ବନ୍ଧୁମାନେ କହିଲେ, କାଉଲ୍‌ଜୀ ଯିବେ ପୃଥିବୀ ପରିଦର୍ଶନରେ । ଭାରତବର୍ଷ, ବର୍ମା, ସିଂହଳରେ ସାଙ୍ଗସାଥୀମାନଙ୍କୁ ଘେନି ବୁଲିଲେ ବର୍ଷ ବର୍ଷ । ଫେରିଆସି ଦେଖନ୍ତି ଯେ, ଅଧିକାଂଶ ଜମିଦାରୀ ନିଲାମ ହୋଇଯାଇଛି । ପରିବାରର ଅନ୍ୟାନ୍ୟ ହିସାବୀ ବନ୍ଧୁମାନଙ୍କ ଦୟାରୁ କଚେରୀରେ ଚାଲେ ମକଦ୍ଦମା ।

ତାଙ୍କ ଅନ୍ତେ ତାଙ୍କ ପୁତ୍ର ଦାୟାଦ ହିସାବରେ ପାଇଲେ ଅଦାଲତରେ ଅସଂଖ୍ୟ ସାର୍ଟିଫିକେଟ ଓ ଜୁଆ-ପଶାର ଅଦମ୍ୟ ନିଶା । ଏଇ ଦୁଇକୁ ବଞ୍ଚାଇ ରଖିଲେ ଆଜୀବନ, ଘରର ଅର୍ଥ, ସୁନା, ଜମି, କୋଠା ଇତ୍ୟାଦିର ବିନିମୟରେ । କୌଣସି ପ୍ରକାରେ ଜୀବନ ବିତାଇଲେ ଆମ କାଉଲ୍‌ଙ୍କର ପିତା, ଅତୀତର ଗର୍ବ ଓ ପୁଞ୍ଜି ଦେଇ । ଆମ ଏ କାଉଲ୍‌ଙ୍କର ପୃଥିବୀରେ ଅବରୋହଣ ସମୟକୁ କାଉଲ୍ ପରିବାରର ଗୌରବ ଏକ ଐତିହାସିକ ବିଷୟବସ୍ତୁ ହୋଇ ରହିଯାଇଥିଲା । କାଉଲ୍‌ଙ୍କୁ ଯେତେବେଳେ ତିନିବର୍ଷ, ପିତା ବିଦାୟ ନିଅନ୍ତି ବୋଧହୁଏ ସ୍ୱର୍ଗକୁ । ପାଞ୍ଚବର୍ଷ ବେଳକୁ ମାତା ।

ବନ୍ଧୁବାନ୍ଧବହୀନ, ସମ୍ପତ୍ତିହୀନ କାଉଲ୍ ଠିଆହେଲେ ଏକା ହୋଇ ସମଗ୍ର ପୃଥିବୀରେ ବଞ୍ଚିବାପାଇଁ ଓ ସଂଗ୍ରାମ କରିବାପାଇଁ । ଭବିଷ୍ୟତର ଜୀବନପାଇଁ ନା ଅଛି ପଥ, ନା ଅଛି ପାଥେୟ । ଶୁଣାଯାଏ ଗ୍ରାମରେ ତାଙ୍କର ଦୂରସମ୍ପର୍କୀୟ ବନ୍ଧୁମାନେ ତାଙ୍କୁ ହତ୍ୟା କରିବାପାଇଁ କାଛେ ଚେଷ୍ଟା ବି କରିଥିଲେ ଯତ୍‌କିଞ୍ଚିତ ଅବଶିଷ୍ଟ ସମ୍ପତ୍ତିର ଲୋଭରେ । କିନ୍ତୁ ସାହାଯ୍ୟ କଲେ ଜଣେ ମାତୁଳ ସ୍ଥାନୀୟ ଆତ୍ମୀୟ । ପଠାଇଦେଲେ ବମ୍ବେ ସହରକୁ । ଭାବିଲେ, ହତ୍ୟାର ବିନା ଅଭିଯୋଗରେ ଉଦ୍ଦେଶ୍ୟ ସାଧିତ ହେବ । ବିନା ଅସ୍ତ୍ରପ୍ରୟୋଗରେ କୌଣସି ଟ୍ରାମ୍ ବା ବସ୍ ତଳେ କାଉଲ୍ ମୃତ୍ୟୁବରଣ କରିବେ । କାଉଲ୍ ପହଞ୍ଚିଲେ ବମ୍ବେରେ ।

କାଉଲ୍ ପରିବାରର ବିଶାଳ ପ୍ରସ୍ତରଖଣ୍ଡ ପରିଶେଷରେ ଆସି ଧୂଳିକଣା ରୂପରେ ପହଞ୍ଚିଲା ଆମର ଏ କାଉଲ୍‌ଙ୍କ ଜୀବନରେ— ସମୟର ଗଡ୍‌ଡ଼ାଳିକା ଭିତରେ ।

"ଦାସ ସାହେବ ! ପ୍ରତ୍ୟେକ ଜନ୍ମ ମୂଳରେ ଗୋଟାଏ ଗୋଟାଏ ଯୁଦ୍ଧର ଇତିହାସ ଅଛି । ପ୍ରତ୍ୟେକ ବ୍ୟକ୍ତି ଗୋଟାଏ ମହାଯୁଦ୍ଧର ଉପସଂହାର । ପୁରୁଷର ବୀର୍ଯ୍ୟରୁ ନିର୍ଗତ ହୁଏ କୋଟି କୋଟି ସ୍ପର୍ମ, ଛୁଞ୍ଚି ମୁନଠାରୁ କ୍ଷୁଦ୍ର । ସେମାନେ ନାରୀର ନିର୍ଗତ ଅଣ୍ଡକୋଷ ପାଖକୁ ଛୁଟିଆସନ୍ତି । ଅସଂଖ୍ୟ ସ୍ପର୍ମ ସଂଗ୍ରାମ କରୁଥିଲେ ଗୋଟିଏ ଅଣ୍ଡକୋଷ ପାଇଁ । ଗତି ମଧ୍ୟରେ ଲୋପ ପାଇଲେ ଅନେକ ।'ଶେଷକୁ ଜିତିଲା କେବଳ ସେହି ସ୍ପର୍ମଟି, ଯିଏ ଥିଲା ସର୍ବୋପରି ବଳିଷ୍ଠ । ଯିଏ ଥିଲା କ୍ଷୀପ୍ରତମ । ଏହି ଦୁଇ ମିଶି ସୃଷ୍ଟି କଲେ କ୍ଷୁଦ୍ର ଗୋଟିଏ ସେଲ୍ । ସେହି ସେଲ୍ ମାତାର ଗର୍ଭରେ ବର୍ଦ୍ଧିଷ୍ଣୁ ହୋଇ ହେଲା ଶିଶୁ । ଜନ୍ମ ନେଲା । ଜନ୍ମ ହେବା ପରେ ଯତ୍ନ ନେଲେ ପିତାମାତା । ଅବସାନ ହେଲା ସଂଘର୍ଷର ।"

କିଛି ସମୟ ଚିନ୍ତାଶୂନ୍ୟ ମନରେ ଅନାଇ ରହିଲେ ଦୂରକୁ । ତା'ପରେ ପୁଣି ଆରମ୍ଭ କଲେ, " କିନ୍ତୁ ମୋ ଜୀବନରେ ଜନ୍ମ ପରେ ଏ ସଂଘର୍ଷର ଉପଶମ ହେଲା ନାହିଁ । ଏ ଯୁଦ୍ଧ ଚାଲିଲା ଅନେକ ଦିନ

ଧରି । ଅନେକ ଯନ୍ତ୍ରଣା ପାଇଲି । ରକ୍ତାକ୍ତ ହେଲା ଶରୀର । କ୍ଷତବିକ୍ଷତ ହେଲା ଆତ୍ମା ।

''ଜୀବନର ପ୍ରଥମ ସାତ ଆଠବର୍ଷ କିପରି କଟିଗଲା ଜାଣେ ନାହିଁ । ଜୀବନ୍ତ ପରଦା ଉପରେ କିଛି ତା'ର ଛାପ ନାହିଁ । କେବଳ ଗୋଟାଏ ଅସ୍ୱସ୍ତିଭାବ ଆଜି ପର୍ଯ୍ୟନ୍ତ ରହିଯାଇଛି—ଯେତେବେଳେ ମନେପଡ଼େ ଆମର ସେ ପ୍ରାସାଦ, ସେ ଘୋଡ଼ାଶାଳ ଇତ୍ୟାଦିର ବିରାଟ ଭଗ୍ନସ୍ତୂପ । ଏବେ ଶୃଗାଳ, ସର୍ପର ବାସସ୍ଥାନ ହୋଇ ରହିଛି । ଆଜିପର୍ଯ୍ୟନ୍ତ ବି ସେଠାକୁ ଯିବାପାଇଁ କେବେହେଲେ ଆଗ୍ରହ ହୋଇନାହିଁ । ସେ ପରିସର ଭୟାନକ ମନେହୁଏ ।''

ଆଠ ନ'ବର୍ଷ ବେଳକୁ କାଉଲ୍ ପହଞ୍ଚିଲେ ବମ୍ବେରେ । କିପରି ପହଞ୍ଚିଲେ ସେଠି ଠିକ୍ ମନେ ନାହିଁ ତାଙ୍କର । ବୋଧହୁଏ ସେ ମାତୁଳଙ୍କ ଦୟାରୁ ଦିନେ ନିଜକୁ ଦେଖନ୍ତି ବମ୍ବେର ସଡ଼କ ଉପରେ । ଟ୍ରାମ୍, ଲୋକ ଓ ଶବ୍ଦରେ ଆଖି କାନ ଭରି ଯାଉଥାଏ । ଗୋଟାଏ ଦୋକାନୀର ଟହଲିଆ ଭାବରେ ନିଯୁକ୍ତି ପାଇଲେ । ଦୋକାନୀ ପାଇଁ ବଜାରରୁ ପାନ ଆଣନ୍ତି । ଚା' ତାଙ୍କ ଜରିଆରେ ମଗା ହୁଏ । ଦରକାର ପଡ଼ିଲେ ବାବୁଙ୍କ ସାଙ୍ଗରେ ଯାନ୍ତି ବଡ଼ ବଜାରରୁ ତାଙ୍କର ଭୁଷାମାଲ ସଉଦା ପାଇଁ । ଗହମ, ଚାଉଳ, ଡାଲି, ସିଗାରେଟ୍, ଅଗରବତୀ, ସାବୁନ ଇତ୍ୟାଦି । ଖୁବ୍ ଭଲ ଲାଗୁଥାଏ ସେ ବମ୍ବେଟି । ଚାରିଆଡ଼େ ଭିଡ଼୍, ଚାରିଆଡେ ମାସ୍ । ସବୁଠି ଜନତା, ସବୁଠି ଗତିର ବେଗ ।

ଦିନରେ ଦୋକାନ ସଜାସଜି ହୁଏ । ଖରାବେଳେ ସଉଦା ବିକାକିଣା । ରାତିରେ ଦୋକାନୀର ପୁଅଝିଅ ସବୁ ପଢ଼ି ବସନ୍ତି ପଣ୍ଡିତ ପାଖରେ । କାଉଲ୍ ବସନ୍ତି ପଛରେ ଖଣ୍ଡେ ସିଲଟ୍ ଧରି । ଇଂରାଜୀ, ହିନ୍ଦି ପଢ଼ାହୁଏ ।

କାଉଲଙ୍କୁ ଦୋକାନୀ ମଝିରେ ମଝିରେ ମାଡ଼ ଦିଏ, ଯଦି ହେଳା ହୋଇଯାଏ ତା'ର କାମର ବରାଦରେ, ନଚେତ ଯଦି ତା'ର ପଇସାରେ ବଜାରରୁ

ଜଳଖିଆ ଖାଇଦେଇ ତାକୁ ମିଛ ହିସାବ ଦିଅନ୍ତି । ମାଡ଼ପରେ ଦୋକାନୀ ବୁଝାଏ ନୈତିକତା । ସତ୍ୟବାଦୀ ହେବ, କର୍ମଠ ହେବ, ସାଧୁ ହେବ । ମାଡ଼ର ଯନ୍ତ୍ରଣା ଭୁଲିଗଲେ ପୁଣି ତା'ର ପୁନରାବୃତ୍ତି ଚାଲେ । କାଉଲ୍ ଚୋରିକଲେ ଏଥର ବେଶି ବେଶି । ଡେରି କଲେ ଆହୁରି ଅଧିକ । ଦୋକାନୀ ଆଉ ବରଦାସ୍ତ କଲା ନାହିଁ । ଦିନେ ତାଙ୍କୁ ବାହାର କରିଦେଲା, ନିଷ୍ଠୁର ମାଡ଼ ପରେ । ସେତେବେଳକୁ କାଉଲ୍‌ଙ୍କ ପକେଟରେ କେତୋଟି ମାତ୍ର ଅବଶିଷ୍ଟ ଚୋରି ଟଙ୍କା ଥାଏ ।

ଚାରିଆଡ଼େ ବୁଲିଲେ କାଉଲ୍ । ଦିନେ ଗୋଟିଏ ହୋଟେଲର ଫୁଟ୍‌ପାଥ୍ ତଳେ ଶୋଇଛନ୍ତି । ରାତି ଶେଷ ହୋଇଗଲାଣି, ଖିଆଲ ନାହିଁ । ଜଣେ ଆସି ତାଙ୍କ ଦେହକୁ ଗୋଇଠା ମାରି ଉଠାଇଲା । କହିଲା, "ଶଳା ! ଏଇଠି କେବଳ ଶୋଇବା ପାଇଁ ଜାଗା ଥିଲା, ଏତେ ବଡ଼ ବମ୍ବେ ସହରରେ ?"

କାଉଲ୍‌ଙ୍କର ନିଦ ଭାଙ୍ଗିଗଲା । ଦେଖିଲେ ଜଣେ ହ୍ରସ୍ୱକାୟ, ଶ୍ୟାମ ରଙ୍ଗର ନିଷ୍ଠୁର ବ୍ୟକ୍ତି । ଗୋଟିଏ ଠେଲାଗାଡ଼ିରେ ବିଭିନ୍ନ ଧରଣର ଖବରକାଗଜ ନେଇ ସେଠି ଆସି ପହଞ୍ଚିଛି । ବଡ଼ ପାଟିରେ ସେ ମୋଟା ଲୋକଟି କହିଲା, "ହଟୋ ଇହାଁସେ ।" କାଉଲ୍ ଘୁଞ୍ଚିବସିଲେ ଟିକେ ଦୂରରେ । ସେ ଦିନଟା କିପରି କଟାଇବେ, ତା'ରି ଯୋଜନା ମନେ ମନେ କରୁଥାନ୍ତି ।

ଖବରକାଗଜ, ମାଗାଜିନ ସବୁକୁ ଘେରି ବହୁତ ଲୋକ ଜମା ହୋଇଥାନ୍ତି । ସେ ଫୁଟ୍‌ପାଥ୍ ସାମ୍ନାରେ ବସ୍, ଟ୍ରାମ୍ ସବୁ ଅଟକେ । କାଉଲ୍ ବସିଥାନ୍ତି । ଦେଖୁଥାନ୍ତି ଏ ବିକା କିଣା । ବସ୍, ଟ୍ରାମ୍ ଆସିଲେ ଲୋକେ ଦଉଡ଼ି ଯାଉଥାନ୍ତି ବସ୍, ଟ୍ରାମ୍ ଧରିବା ପାଇଁ । ଫୁଟ୍‌ପାଥ୍‌ର ଚାରିକଡ଼ରେ ସେଇମିତିଆ ଗୋଟାଏ ବଡ଼ କ୍ୟୁ ଲାଗିଥାଏ । ମଝିରେ ମଝିରେ ଟିକିଏ ନିରୋଳା ପଡ଼ିଯାଏ ଲୋକଟି ପାଖରେ ।

କାଉଲ୍ ଅତି ସନ୍ତର୍ପଣରେ ଲୋକଟି ପାଖକୁ ଆସି କହିଲେ, "ମୋତେ ପାଞ୍ଚ ଦଶଟା କାଗଜ ଦିଅ, ମୁଁ ଆର ଫୁଟ୍‌ପାଥିର କ୍ୟୁରେ ଲୋକଙ୍କୁ ବିକିଦେଇ ଆସିବି ।"

ଏ ହୃଷ୍ଟକାୟ ଲୋକଟି କିଛି ସମୟ କାଉଲ୍‌ଙ୍କୁ ଲକ୍ଷ୍ୟ କଲା । ତା'ପରେ ତାଙ୍କ ହାତକୁ ବଢ଼ାଇ ଦେଲା ପାଞ୍ଚଖଣ୍ଡ କାଗଜ । ପଚାରିଲା, "ତୁମାରା ନାମ କ୍ୟା ?" କାଉଲ୍ କହିଲେ, "ରମେଶ ।"

ରମେଶ କାଗଜ ନେଇ ତୁରନ୍ତ ବିକ୍ରୀ କରିଦେଇ ଆସି ଆଉ ପାଞ୍ଚଖଣ୍ଡ ନେଇଗଲେ । ପଇସାତକ ଦେଇ ଯାଉଥାନ୍ତି ସେ ଲୋକଟିକୁ । "ଏ କାଗଜରେ ବିଶେଷ ଲାଭ ନାହିଁ । ତା'ଛଡ଼ା ସମସ୍ତେ ନିଜେ ଆପେ ଆପେ ଆସିବେ । ପାରିବୁ ତ ମାଗାଜିନ୍ ଦୁଇଖଣ୍ଡ ବିକି ଆ । ଫାଇଦା ଅଛି ।" ସେ ଲୋକଟି କହିଲା ।

ରମେଶ ପଚାରିଲେ, "ଏହାର ନାମ ସବୁ କ'ଣ ?"

"ଫିଲ୍ମଫେୟାର ଏ ଖଣ୍ଡିକ, ଏ ଖଣ୍ଡିକ ବ୍ଲିଜ୍, ଆଉ ସେ ଖଣ୍ଡିକ କରେଣ୍ଟ ।" ରମେଶ ଗଲେ ଛକ ଉପରକୁ ଖଣ୍ଡେ ଫିଲ୍ମଫେୟାର୍ ନେଇ । ମଟରରେ ସାହେବ ମେମ୍ ବସିଥାନ୍ତି । ଟ୍ରାଫିକ୍ ଲାଇଟ୍ ନାଲି ଅଛି । କିଛି ସମୟ ଅପେକ୍ଷା କରିବାକୁ ହେବ ।

ରମେଶ କହିଲେ, "ମେମ୍‌ସାହେବ ! କାଲିଠାରୁ ଖାଇନାହିଁ । ଏଇଟି ନେଲେ ମୋର ଖାଇବା ଗଣ୍ଡାକ ମିଳିବ ।"

ମେମ୍‌ସାହେବ ତୁରନ୍ତ ନେଲେ ଫିଲ୍ମଫେୟାରକୁ । ରମେଶ ଆଉଖଣ୍ଡେ ବ୍ଲିଜ୍ ନେଇ ଆଉ ଗୋଟାଏ ମଟର ପାଖକୁ ଗଲେ । କହିଲେ ସେଇ କଥା, "ସାହେବ ! ଆଜି ଖାଇନାହିଁ । ଏଇଟିକୁ ନେଲେ ଖାଇବା ଖର୍ଚ୍ଚ ମିଳିବ ।"

କରେଣ୍ଟ ବିକିଲେ ସେଇ କଥା କହି । ଅନେକ ମାଗାଜିନ୍ ସେଦିନ ବିକ୍ରିହେଲା ରମେଶଙ୍କର ଉଦ୍ୟମରେ । ସେଦିନ ସେ ମୋଟା ଲୋକଟି ଖୁବ୍ ଖୁସି ହେଲା ରମେଶଙ୍କ ଦକ୍ଷତାରେ । ଖବରକାଗଜ, ମ୍ୟାଗାଜିନ୍‌ର ବେଶ୍ କାଟତି ହେଲା ।

ସେତେବେଳକୁ ବାଜିଲାଣି ଦିନ ଦଶଟା । ସଡ଼କର ଲୋକ ଗହଳି ଟିକେ କମି ଆସିଛି । ସାହେବମାନେ ସବୁ ଦପ୍ତର ଗଲେଣି । ଆଉ କାଗଜ କିଏ କିଣିବ ? ଯାହା ହେବ ସନ୍ଧ୍ୟାବେଳକୁ ।

ରମେଶ ସ୍ୱଇଚ୍ଛାରେ ସେ ଠେଲାଗାଡ଼ିକୁ ପଛରୁ ଠେଲିଲେ । ଅନୁମୋଦନ କଲା ସେ ମୋଟାଲୋକଟି । ରାସ୍ତାରେ ପଚାରିଲା, ‘‘ରମେଶ, ଏଠି କ’ଣ କରୁଛୁ ?’’

‘‘ଗୋଟାଏ ଦୋକାନରେ କାମ କରୁଥିଲି, ଚୋରିକଲି ବୋଲି ବାଢ଼େଇ ବାହାର କରିଦେଲା ।’’

ମୋଟା ଲୋକଟି ଉପଭୋଗ କଲା ରମେଶଙ୍କର ଏ ସ୍ୱଷ୍ଟ ଉତ୍ତରକୁ । ସନ୍ତୋଷ ମଧ୍ୟ ପ୍ରକାଶ କଲା । ପଚାରିଲା, ‘‘କେତେ ?’’

‘ପାଞ୍ଚଟା ଟଙ୍କା ।’

‘ବେକୁବ୍ !’

‘ବାପା ମା ଅଛନ୍ତି ?’—ପଚାରିଲା ମୋଟାଲୋକଟି ।

‘ନା ।’

‘କେତେଦିନ ହେଲାଣି ବମ୍ବେରେ ?’

‘ବର୍ଷେ ହେବ ।’

'ବେଇମାନି କରିବୁ ?'

'ନା ।'

'ଚାଲ୍ ମୋ ସାଙ୍ଗରେ ।'

ଠେଲାଗାଡ଼ି ଲାଗିଲା ଗୋଟାଏ ସନ୍ତସନ୍ତିଆ ଗଳି ଭିତରେ । ନୁଆଁଣିଆ, ଅନ୍ଧକାର, ଅପରିଷ୍କାର କଳା କଳା ଘର । ସେଠି ଏଇ ମୋଟା, ଭୀଷଣକାୟ ଲୋକଟି ରହେ—ତାର ନାମ ସଲିମ୍ ।

ରମେଶ ଠେଲାଗାଡ଼ିରୁ ଖବରକାଗଜ ସବୁ ଉଠାଇଆଣି ତା'ର ସେ କୋଠରି ଭିତରକୁ ନେଇଗଲେ । ସଲିମ୍ କହିଲା, 'ସେ ଟାବଲରେ ସବୁ ସଜାଇ ରଖ୍ । ତଳେ ବଡ଼ ବଡ଼ କାଗଜ, ଉପରେ ସାନ ସାନ ବହି ।'

କାଗଜ ସଜା ସରିଗଲା ।

ସଲିମ୍ କହିଲା—'ଏ ରୁଟି ଲେ । ଦୁଇପଟ । ବସ୍ ସେ ବେଞ୍ଚରେ ।'

ରମେଶ ସେତକ ଖାଇ ପାଣି ପିଇଲେ ।

ସଲିମ୍ ଇତିମଧ୍ୟରେ ଗାଧୁଆ ସାରି ଖାକି ଜାମା, ହୁଗୁଳା ପ୍ୟାଣ୍ଟ ଖଣ୍ଡେ ପିନ୍ଧି ଗୋଟାଏ ଭଙ୍ଗା ଆଇନାରେ ନିଜର ମୁହଁ ଦେଖୁଛି ଭାଗ ଭାଗକରି । ସମୁଦାୟ ମୁହଁଟା ତ ଆଉ ଆରସିରେ ଧରିବ ନାହିଁ ! ପ୍ରଥମେ ମୁଣ୍ଡ, ତା'ପରେ ମୁହଁ । ସଲିମ୍ ମଧ୍ୟ ବାକିତକ ରୁଟିକୁ ଚିନି ଲଗାଇ ଖାଇଦେଲା । ପିଇଲା ପାଣି ।

ରମେଶଙ୍କୁ ଲକ୍ଷ୍ୟକରି ସଲିମ୍ କହିଲା, ''ଆ ମୋ ସାଥିରେ । ଅଫିସରେ ଏସବୁ କାଗଜ ଫେରାଇବାପାଇଁ ପଡ଼ିବ । ଛୋଟ ଛୋଟ କିତାବ ସବୁ ସେଠି ଥାଉ । ପକା ତାଲା ।'

ଦୁଇଜଣ ବାହାରିଗଲେ । ଗଳିରୁ ଗଳି, ସଡ଼କରୁ ସଡ଼କ ଦେଇ ପହଞ୍ଚିଲେ ଖବରକାଗଜ ଅଫିସରେ । ଜମାଦେଲେ ବାକିଆ କାଗଜ ।

ସଲିମ୍ କହିଲା, ''ମୁଁ ଅଭି ଏଠି ରହିବି । ଦିନ ତିନିଟା ପର୍ଯ୍ୟନ୍ତ ତୁ ଘୂରାଘୂରି କରି ଆ ଆମ ବସାକୁ । ଏଇ ଲେ ଚାରଣା ପଇସା ।''

ସଲିମ୍ ସେ ଖବରକାଗଜ ଅଫିସରେ ଦରୱାନ ।

ଖବରକାଗଜ ଅଫିସରେ କିଛି ସମୟ ବୁଲିଲେ କାଉଲ୍ । ଦୋକାନୀ ପାଖରେ ଯେତିକି ଭାଷା ସହିତ ପରିଚିତ ଥିଲେ, ସେତକ ଅକ୍ଷର ଦେଇ ଚିହ୍ନୁଥାନ୍ତି ଇଂରାଜୀ, ହିନ୍ଦୀଲେଖା କାନ୍ଥରେ, ବହିରେ ।

ସେଠୁ ବାହାରି ଅନେକ ବୁଲିଲେ । ଓପରଓଳି ତିନିଟାବେଳେ ହାଜିରି ହେଲେ ରମେଶ ସେଇ କୋଠରିରେ । କପେ ଚା' ଖାଇଲା ସଲିମ୍ । ରମେଶ ଖାଇଲେ ଖଣ୍ଡେ ରୁଟି । ଦୁଇଜଣଯାକ ବାହାରିଲେ ପୁଣି ସେଇ ହୋଟେଲ ତଳ ଫୁଟ୍‌ପାଥ୍‌କୁ । ରମେଶ ଠେଲିଲେ ଗାଡ଼ି, ମାଗାଜିନ ସବୁ ନେଇ ସେଠି ପହଞ୍ଚିଲେ । ହୋଟେଲକୁ ଯିବା ଆସିବା କରୁଥିବା ଲୋକଙ୍କୁ ଦେଖାନ୍ତି, କେତେକ ମଧ୍ୟ କିଣନ୍ତି ସେଥିରୁ । ମାଗାଜିନ, ଖବରକାଗଜ, ଶସ୍ତା ହିନ୍ଦୀ ପ୍ରେମଗପ ଏହି ଫୁଟ୍‌ପାଥ୍‌ରେ ସଜାହୋଇ ରଖାହୋଇଥାଏ । ଜଗିଥାନ୍ତି ରମେଶ ।

କାଉଲ୍ କହନ୍ତି ବ୍ୟବସାୟଟା ସେ ଜୀବନରେ ଶିଖିଛନ୍ତି ସଲିମ୍‌ଠୁ । ଦିନେ ସଲିମ୍ କହିଲା, ''ରମେଶ ! ପ୍ରତ୍ୟେକ ଦିନ ଭୋରରୁ ଆଉ ସବୁ ହକର ପହଞ୍ଚିବା ପୂର୍ବରୁ ତୁ ଏଇସବୁ ଖବରକାଗଜ ନେଇ ପହଞ୍ଚ ଲୋକମାନଙ୍କ ଘରେ, ଏହି ସାହି ଭିତରେ ଯେତେ ଅଛନ୍ତି । ତା'ପରେ ଯିବା ହୋଟେଲ ସାମନାକୁ ।''

ରମେଶ ରାଜି ହେଲେ । ବଡ଼ିସକାଳୁ ହିନ୍ଦୀ, ଉର୍ଦ୍ଦୁ, ମରାଠୀ କାଗଜ ସବୁ ନେଇ ପହଞ୍ଚନ୍ତି ଆଖପାଖ ଲୋକଙ୍କ ଘରେ । ପଇସା ଆଣି ଜମାଦିଅନ୍ତି

ସଲିମ୍ ପାଖରେ । ତା'ପରେ ପୁଣି ଦୁଇଜଣ ବାହାରି ଯା'ନ୍ତି ହୋଟେଲ ସାମନାକୁ । ବିକ୍ରୀପରେ ଘରକୁ ଫେରନ୍ତି, ରୁଟି ଖାଇଦେଇ ସାରିଲା ପରେ କୋଠରିରେ ତାଲା ପଡ଼େ । ସଲିମ୍ ଯାଏ ତା'ର ଚାକିରିରେ । କାଉଲ୍ ଯା'ନ୍ତି ସଡ଼କକୁ । ଉଭୟ ଦେଖା ହୁଅନ୍ତି ଦିନ ତିନିଟାରେ । ସନ୍ଧ୍ୟାପର୍ଯ୍ୟନ୍ତ ପୁଣି ବହି ବିକ୍ରି ହୁଏ । ଫେରିଆସି ଡାବଲ ସବୁ ଯୋଡ଼ି ତା'ଉପରେ ଶୁଏ ସଲିମ୍ । ରମେଶ ଶୁଅନ୍ତି ତଳେ ।

ମଝିରେ ମଝିରେ ସଲିମ୍ ଦିଏ ଆଠଣା, ଟଙ୍କାଏ ରମେଶଙ୍କୁ । ଆଉ ଦିନେ ସଲିମ୍ କହିଲା, "ଆଉ ଟିକିଏ ଭଲରେ ହିନ୍ଦୀ, ଇଂରେଜୀ ପଢ଼ି ଶିଖ୍ । ବହି ବିକିବା କାଗଜ ସାଙ୍ଗରେ—ରେଳ ଷ୍ଟେସନରେ ଯେମିତି ସବୁ ବିକନ୍ତି । ଖୁବ୍ ମୁନାଫା ହେବ ।"

ତା'ପରଠାରୁ ଖରାବେଳେ ରାସ୍ତାରେ ବୁଲିବା ପରିବର୍ତ୍ତେ ରମେଶ ଗଲେ ସ୍କୁଲକୁ । ଖ୍ରୀଷ୍ଟାନ ସ୍କୁଲ । ଫିସ୍ ପଡ଼ିବ ନାହିଁ । କେବଳ ଯୀଶୁଙ୍କ ନାମ କହିବା ପାଇଁ ହେବ । ସଲିମ୍ ବୁଝାଇଲା ସ୍କୁଲର ମାଲିକାଣୀ ମଦରକୁ, 'ଏ ଖ୍ରୀଷ୍ଟାନ ପିଲା, ବାପ, ମା ଛେଉଣ୍ଡ । ଯାକୁ ଆପଣ ଯୀଶୁଙ୍କ କଥା ଶିଖାନ୍ତୁ ।' ରମେଶଙ୍କୁ ହୁସିଆର କରିଦେଲା, ସେ ଯେପରି ସତକଥା ନ କହେ, ନଚେତ୍ ତାର ବଦନାମ ହେବ ।

କାଉଲ୍ ବିକିଲେ ଖବରକାଗଜ, ମାଗାଜିନ୍, ବିକିଲେ ହିନ୍ଦୀ, ଇଂରାଜୀ ବହି । ଦିନରେ ଗଲେ ସେ ଖ୍ରୀଷ୍ଟାନ ସ୍କୁଲକୁ ।

ସେ ଗଳି ପାଖରେ ଆଉ ଗୋଟାଏ ବଡ଼ ଗଳି ଅଛି । ଦିନବେଳା ସେ ଜାଗାଟା ଶୂନ୍‌ଶାନ୍ । ରାତିରେ ଆଲୁଅ ଓ ଭିଡ଼ର ସୀମା ନାହିଁ । ସକାଳ ଭୋର ପର୍ଯ୍ୟନ୍ତ ସେଠି ଲୋକଗହଳି । ଚାରିଆଡ଼େ ଗୀତ ନାଚର ଆଡ୍‌ଡା ଜମିଥାଏ । ଶସ୍ତା ଅତର ଲଗାଇ, ଫୁଲ ଖୋସି, ସ୍ତ୍ରୀମାନେ ଦୁଆର ମୁହଁରେ ଠିଆ ହୋଇଥାନ୍ତି । ଲୋକ ତା' ଭିତରକୁ ପଶନ୍ତି । ଖାଲି ଚାରିଆଡ଼େ ମଦର ଗନ୍ଧ ।

'ସଲିମ୍ ଭାଇ ! ଏଇଟା କ'ଣ ?'—ପଚାରିଲେ କାଉଲ୍ ।

'ଏଇଟା ବେଶ୍ୟାବସ୍ତି ।'

ମଝିରେ ମଝିରେ ସଲିମ୍ ଯାଏ ସେଠିକୁ, ମାସର ପ୍ରଥମ ସପ୍ତାହରେ ଦରମା ପାଇବା ପରେ । ରମେଶ ବି ଯା'ନ୍ତି ଦିନେ ଦିନେ ତା' ସାଙ୍ଗରେ । ଦେଖିଲେ ସେଠାରେ ଖୁବ୍ ଫୁଲ ବିକ୍ରୀ ହେଉଛି । ଦୋକାନରୁ ଟଙ୍କାଏ ଦୁଇଟଙ୍କାର ଫୁଲହାର କିଣିଆଣି ଛିଡ଼ାହୁଅନ୍ତି ଜଣେ ଦୁଇଜଣ ବେଶ୍ୟାର ଘର ଆଗରେ । ବିଶେଷତଃ ଯେଉଁଠିକି ସଲିମ୍ ଯାଇଥାଏ । ସଲିମ୍‌କୁ ଅପେକ୍ଷା କରିବା ସମୟ ଭିତରେ ଟିକେ ଚଢ଼ା ଦରରେ ବିକ୍ରୀ କରନ୍ତି ଗରାଖମାନଙ୍କୁ ସେ ଯୂଇମାଳା ସବୁ ।

ଖଣ୍ଡେ ଫୁଲହାର ମଧ୍ୟ ଦେଇଆସନ୍ତି ସଲିମ୍ ଭାଇକୁ ସେ ବେଶ୍ୟା ପାଖରେ ଥିଲାବେଳେ । ସଲିମ୍ ଖୁବ୍ ଖୁସିହୁଏ ।

ବିତିଗଲା ଚାରିପାଞ୍ଚ ବର୍ଷ । ପାଠପଢ଼ା, ଖବରକାଗଜ, ଫୁଲବିକା ଭିତରେ କିଛି ପୁଞ୍ଜି ମଧ୍ୟ କରିସାରିଲେଣି ରମେଶ । ପ୍ରାୟ ଟଙ୍କା ଶହେ ଭଳି ହେବ । ସଲିମ୍ ଘରେ ଏବେ ଆଉ ଡାବଲ ନାହିଁ । ଦୁଇଜଣଙ୍କପାଇଁ ଦୁଇଟି କାନଭାସ୍ ଖଟିଆ । ରୁଟି ସାଙ୍ଗକୁ ଏବେ ଦିନେ ଦିନେ ମାଂସ ତରକାରି ବି ଆସୁଛି । କୋଠରିକୁ ଇଲେକ୍‌ଟ୍ରିକ୍ ବଲ୍‌ବ ।

କାଉଲ୍ କହିଲେ, ''ଏ ଦେହର ରକ୍ତ ପାପରେ ଗଢ଼ା । ଏହାର ବ୍ୟତିକ୍ରମ କିପରି ତୁମେ ଆଶା କରୁଛ ?''

ସମୟକ୍ରମେ ଘନିଷ୍ଠ ପରିଚୟ ହେଲା ବେଶ୍ୟା, ମାୟା, ଲତା; ଦଲାଲ ଦୋଷୀ, ଲିୟାମତ୍; ଦୋକାନୀ ରାମଧନ ଓ ହରି ସିଂ ସାଙ୍ଗରେ । ପରିଚୟ ହେଲା ପାଖ ବଡ଼ ହୋଟେଲର ମାଲିକଙ୍କ ସହିତ । ସାହିର ଡାକ୍ତର, ଓକିଲବାବୁଙ୍କୁ ନମସ୍କାର ଜଣାଇଲେ, ସେମାନେ ବେଳେ ବେଳେ ପଚାରନ୍ତି ରମେଶଙ୍କ ରୋଜଗାର ଇତ୍ୟାଦିର ପ୍ରଶ୍ନ ।

ସ୍କୁଲର ମଦର କହିଲେ, ''ଆସନ୍ତା ବର୍ଷ ତୁମର ସ୍କୁଲ ପାଠ ସରିଯିବ ରମେଶ । ପଢ଼ିବାପାଇଁ ଚାହଁ କଲେଜରେ ? ଯଦି ଚାହଁ ମୁଁ ସୁବିଧା କରିଦେବି ବିନା ଫିସ୍‌ରେ । ଖ୍ରୀଷ୍ଟିୟାନ୍ ପିଲାଙ୍କ ପାଇଁ ଦରମା ଛାଡ଼ ହେବ ।

ରମେଶ କହିଲେ, ''ସଲିମ୍ ଭାଇଙ୍କୁ ପଚାରି ଖବର ଦେବି ।''

ଦିନେ ରମେଶଙ୍କୁ ଜର ହେଲା । ଜର ବଢ଼ିଲା । ଦିନ ପରେ ଦିନ କଟିଗଲା ସତ କିନ୍ତୁ ଜର କମିଲା ନାହିଁ । ନିରୋଳା ସେଇ କୋଠରିରେ ପଡ଼ିଥାନ୍ତି ରମେଶ । ଦୁନିଆଟା ଅନ୍ଧାର ଲାଗୁଥାଏ । ସଲିମ୍ ବି ନଥାଏ । ଯାଇଥାଏ ତାର ଗାଁକୁ । ସେଇ ଜରରେ ଟିକେ ଟିକେ ପାଣି ପିଇ ପଡ଼ି ରହିଥାନ୍ତି ରମେଶ ସେଇ ଅନ୍ଧକାର କୋଠରି ଭିତରେ । ରମେଶ ଭାବେ ଏତେବଡ଼ ସହର, ଏତେ ଲୋକ, କେହି ମୋର ନିଜର ବୋଲି ତ ନାହିଁ ! ସମସ୍ତଙ୍କର କେତେ ଲୋକ ଅଛନ୍ତି, କେତେ ଆତ୍ମୀୟ, କିନ୍ତୁ ମୋର ବାପା, ମା, ଭାଇ, ବନ୍ଧୁ ବୋଲି ତ କେହି ନାହାନ୍ତି ? କାରଣ କିଛି ଠିକ୍ କରିପାରନ୍ତି ନାହିଁ ।

ଆସିଲେ କେବଳ ମାୟା । ଦିନବେଳେ କେହି ଗରାଖ ନ ଥିଲେ ଆସନ୍ତି ରମେଶଙ୍କ ପାଖକୁ । ଡକାଇଲେ ଡାକ୍ତର । ନିଜେ ଔଷଧ ଅଣାଇଲେ । ଦେଲେ ପଥ୍ୟ, ଫଳ । ଯତ୍ନରେ ଆଉଁସିଲେ ରମେଶଙ୍କୁ । ପାଖରେ ବସି ଗଳ୍ପ କରି ଶୁଆଇଲେ ।

ଅନେକ ଦିନ ପରେ ସୁସ୍ଥ ହେଲେ ରମେଶ । ମାୟାକୁ ଦେଖିଲେ ରମେଶ କାନ୍ଦି ପକାନ୍ତି, କୁହନ୍ତି, ''ତୁ ମୋର ମା ।''

ବର୍ଣ୍ଣନା କରୁ କରୁ ସତରେ ତାଙ୍କର ଆଖିରେ ଭରିଯାଉଥାଏ ଲୋତକ । କହିଲେ ସେ ମମତାର ସ୍ଥାନ ଆଜି ପର୍ଯ୍ୟନ୍ତ କେହି ପୂରଣ କରିପାରି ନାହାନ୍ତି । ପରେ ମାୟା କେଉଁ ଜଣେ ସର୍ଦ୍ଦାର ସହିତ ଚାଲିଗଲା । ତା' ଘରେ ରହିଛି ଆଜି ପର୍ଯ୍ୟନ୍ତ ।

ସଲିମ୍ କହିଲା, ''ଏ ମୌକା ଛାଡ଼ିବାର ନୁହେଁ । କଲେଜରେ ନାମ ଲେଖା; କିଛି ଲୋକସାନ ତ ନାହିଁ !''

କାଉଲ୍ ନିଜର ସମ୍ମତି ଜଣାଇଲେ ମଦରକୁ । ତହିଁଆର ବର୍ଷ ଭର୍ତ୍ତି ହେଲେ କଲେଜରେ ।

ଛାଡ଼ିଦେଲେ ଫୁଲ ବ୍ୟବସାୟ । ଛାଡ଼ିଦେଲେ ଖବରକାଗଜ ବିକା । ମଦର ଠିକଣା କରିଦେଲେ ଗୋଟାଏ ଚମଡ଼ା ଦୋକାନରେ ରାତିରେ ହିସାବ ଲେଖିବାର କାମ । ରମେଶ ରହିଲେ ସଲିମ୍ ସାଥିରେ । କଲେଜରୁ ଫେରିଯାନ୍ତି ସଂଧ୍ୟାକୁ ଚମଡ଼ା ଦୋକାନକୁ । ଉର୍ଦ୍ଦୁର ଶବ୍ଦ ଓ ଅକ୍ଷରକୁ ଇଂରାଜୀରେ ଲେଖନ୍ତି, ଯାହା ରୋଜଗାର କରନ୍ତି ଦେଇଦିଅନ୍ତି ସଲିମ୍‌କୁ । ସଲିମ୍ ହିସାବ କରି ବାଣ୍ଟେ । ପାଠ ବହିପାଇଁ ଏତେ ଟଙ୍କା, ଖାଇବା ଖର୍ଚ୍ଚ ଏତେ । କହେ, ପ୍ୟାଣ୍ଟ ଜାମା ପିନ୍ଧା ଏହାଠୁ ଆଉ ଅଧିକ ଖର୍ଚ୍ଚ କରିହେବ ନାହିଁ ।

ଆଜି ବି ସଲିମ୍ କାଉଲ୍‌ଙ୍କ କାରଖାନାରେ ଅଛି । ସେ ସୁପରଭାଇଜର । କାମ ତଦାରଖ କରେ । ଆଉ ବି କାଉଲ୍ ତାକୁ ଡାକନ୍ତି ସଲିମ୍ ଭାଇ । ବ୍ୟବସାୟ ସଂକ୍ରାନ୍ତରେ ନିଜର ବ୍ୟକ୍ତିଗତ ଜୀବନ ବିଷୟରେ ମସୁଦା କରନ୍ତି କେବଳ ଜଣଙ୍କ ସାଙ୍ଗରେ, ସେ ହେଉଛି ସଲିମ୍ । ସଲିମ୍ ଯାହା ଚାହିଁବ କାଉଲ୍ ସେ କଥାକୁ ଆଜିପର୍ଯ୍ୟନ୍ତ ଅବଜ୍ଞା କରିନାହାନ୍ତି ।

କାଉଲ୍ ଚମଡ଼ା ବ୍ୟବସାୟର ଭିତର ବାହାର ସବୁ ବୁଝିଗଲେ । ପରିଚୟ ହେଲା ଚମଡ଼ା ବ୍ୟବସାୟୀଙ୍କ ସହିତ । ଜାଣିଲେ ଚମଡ଼ାର ବଜାର । କାଉଲ୍ ପରାମର୍ଶ କଲେ ଚମଡ଼ାକୁ ଦେଶରୁ ବାହାରକୁ ରପ୍ତାନୀ ବନ୍ଦୋବସ୍ତ ନ କଲେ ମୁନାଫା ଉଠିବ ନାହିଁ । ମାଲିକ ମଧ ଏ କଥାକୁ ଗ୍ରହଣ କଲେ । ରପ୍ତାନୀ ହେଲା ମାଳୟ, କୋରିଆ, ଜାପାନକୁ । ବିକ୍ରୀ ବଢ଼ିଲା, ମୁନାଫା ବଢ଼ିଲା, ତା' ସାଙ୍ଗକୁ ତାଙ୍କର ଭାଗ୍ୟ ବଦଳିଲା ।

କଲେଜ ପାଠ ସରିଲା ବେଳକୁ କାଉଲ୍ ପୁରୁଣା ବ୍ୟବସାୟୀ । ସାବୁନ୍, ଖବରକାଗଜ, ଫୁଲଠାରୁ ଆରମ୍ଭ କରି ଜାଣିଲେ ଚମଡ଼ା ପର୍ଯ୍ୟନ୍ତ । ମଝିରେ ମଝିରେ ଗଲେ ଷ୍ଟକ୍-ଏକ୍‌ସଚ୍ରେଞ୍ଜକୁ । ହିସାବ କରି ଅଙ୍କ କଷିଲା ପରି ଖେଳନ୍ତି ସେୟାରମାର୍କେଟରେ । ଏଇ କମ୍ପାନୀ ସେୟାର ନିଶ୍ଚୟ କାଲି ବଢ଼ିବ । ଆଜି କିଣିଲେ ସେ ସେୟାରକୁ । କାଲି ବିକିଲେ । କ୍ଲବ୍‌କୁ ଗଲେ । କ୍ଲବ୍‌ରେ ଶୁଣିଲେ ଆମେରିକାର ବ୍ୟବସାୟୀଙ୍କ ସହିତ ସମଝୋତାରେ ଅକ୍‌ସିଜେନ୍ କମ୍ପାନୀର ପ୍ରସାର କଥା କାଲି ଖବରକାଗଜରେ ବାହାରିବ । ସିଦ୍ଧାନ୍ତ ନେଲେ କାଉଲ୍ । ଆଜି ତାର ସେୟାର କିଣିଲେ କିଛିଦିନ ଭିତରେ ନିଶ୍ଚୟ ବଜାର ଦର ବଢ଼ିବ । ଲାଭ ହେବ ତିନିଗୁଣା । ଷ୍ଟକ୍-ଏକସ୍‌ଚ୍ରେଞ୍ଜରେ ପୋଖତ ଖେଳାଳି ସାଜିଲେ କାଉଲ୍ ।

ବାହାରକୁ ଜିନିଷ ବିକ୍ରୀ କରିବାପାଇଁ ଚାଲିଲେ ଜାପାନକୁ । ସେଠି ବ୍ୟବସାୟୀଙ୍କ ସହିତ ସ୍ଥିର କଲେ, ତାଙ୍କର ସାହାଯ୍ୟ ଓ ସମର୍ଥନରେ ଏଠି ଟାନିଂ କାରଖାନା ବସିବ । ଫେରିଆସି ତାଙ୍କ ମାଲିକକୁ କହିଲେ, "ଏଇଟାକୁ ଆପଣ ପ୍ରାଇଭେଟ ଲିମିଟେଡ଼ କମ୍ପାନୀ କରିଦିଅନ୍ତୁ । ଭବିଷ୍ୟତ ଏହାର ଉଜ୍ଜ୍ୱଳ ।"

ଏଇ ଚମଡ଼ା ଦୋକାନକୁ କମ୍ପାନୀ କରି ଦିଆଗଲା । କାଉଲ୍ ହେଲେ ଜଣେ ଡାଇରେକ୍ଟର । କମ୍ପାନୀର ଶାଖା ରହିଲା, ଭାରତର ପ୍ରତ୍ୟେକ ରାଜ୍ୟର ବିଭିନ୍ନ ସହରରେ । ମାଲିକଙ୍କର ଅଖଣ୍ଡ ବିଶ୍ୱାସ ଥିଲା କାଉଲ୍‌ଙ୍କ ଉପରେ । କମ୍ପାନୀର ମାଲିକ ମରିଗଲେ । ସନ୍ତାନସନ୍ତତିହୀନା ମାଲିକ ପତ୍ନୀ ଅଧିକାଂଶ ସେୟାରକୁ ଲେଖିଦେଲେ କାଉଲ୍‌ଙ୍କୁ । କାଉଲ୍ ହେଲେ ଭାରତବର୍ଷର ଶ୍ରେଷ୍ଠ ଚମଡ଼ା କମ୍ପାନୀର ମ୍ୟାନେଜିଂ ଡାଇରେକ୍ଟର । ଶେଷଦିନ ପର୍ଯ୍ୟନ୍ତ ମନପ୍ରାଣ ଦେଇ ସେବା କଲେ ମାଲିକର ବିଧବାପତ୍ନୀ ଓ ଅନ୍ୟାନ୍ୟ ଆଶ୍ରିତଙ୍କର ।

ମଝିରେ ମଝିରେ ଚୋରା ସ୍ମଗଲିଂ କଲେ । ବିଦେଶରୁ ସୁନା ଚୋରା ଭାବରେ ଆମଦାନୀ କଲେ ।

ଆଇନ ବିରୁଦ୍ଧରେ ଜମା କଲେ ବିଦେଶୀ ମୁଦ୍ରା । ଖେଳିଲେ ଷ୍ଟକ୍‌ଏକ୍‌ସଚେ‌ଞ୍ଜରେ । ରାତ୍ରି ଯାପନ କଲେ କ୍ଲବ୍‌ରେ । ସେବନ କଲେ ମଦିରା । ବନ୍ଧୁତ୍ୱ କଲେ କୁଖ୍ୟାତା ନାରୀଙ୍କ ସାଙ୍ଗରେ । ଯୋଗଦେଲେ ରେସ୍ କୋର୍ସରେ ।

''ଦାସ ସାହେବ ! ଏ ଏକ କଳଙ୍କିତ ଇତିହାସ । ସଡ଼କର ନର୍ଦ୍ଦମା ପରି ଦୁର୍ଗନ୍ଧମୟ । କିନ୍ତୁ ଯେଉଁ କୀଟ ପରିସ୍ଥିତିର ବିବର୍ତ୍ତନରେ ସେଇ ନର୍କରେ ଜନ୍ମ ନିଏ, ତାର ଆଉ ବିକଳ୍ପ ଜୀବନ ସମ୍ଭବ ନୁହେଁ । ତା'ଛଡ଼ା ଭାବେ, ଏ ଜୀବନ ମନ୍ଦ କ'ଣ ?''

ସ୍ତିମିତ ହୋଇଆସିଲାଣି ନୃତ୍ୟ । ଶେଷ ହୋଇଗଲାଣି ମଦିରା । ରାତି ଟଳିଲାଣି ପ୍ରଭାତୀ ଆଡ଼କୁ । କୌଣସି ଉତ୍ତରର ପ୍ରତ୍ୟାଶା କରି ନଥିଲେ କାଉଲ୍ ଅଥବା ଉପଲବ୍‌ଧି କରିବା ପରି ଅବସ୍ଥାରେ ନଥିଲେ ସେତେବେଳକୁ ।